ଗଙ୍ଗାଧର ପାଢ଼ୀଙ୍କ ରଚିତ

# ଭବିଷ୍ୟ ପୁରାଣ

ନୂତନ ମୁଦ୍ରଣ



ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର

ଅଲିଶା ବଜାର, କଟକ-୨

ଫୋନ ନମ୍ବର—୨୧୭୨୭

ମୂଲ୍ୟ—ଟ ୧-୭୫ ଏକଟଙ୍କା ପଚସ୍ତୁରୀ ପଇସା ମାତ୍ର

୬ ଗଙ୍ଗାଧର ପାଣିଙ୍କ ବିରଚିତ

# ଭବିଷ୍ୟ ପୁରାଣ



ନୂତନ ମୁଦ୍ରଣ

ସମସ୍ତ ପ୍ରକାର ପୁସ୍ତକ ଓ ହାଇକୋର୍ଟରୁ ଡିଗ୍ରୀପ୍ରାପ୍ତ ସରକାରଙ୍କ ପଞ୍ଜିକା
ବିଭାଗ ଅଫିସରୁ ଉଚ୍ଚ ପ୍ରଶଂସିତ ଜାତୀୟ ରତ୍ନ ପଞ୍ଜିକା
ମିଳିବାର ଠିକଣା ।

**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରୋ: ପ୍ରା: ଶ୍ରୀ ବିଦ୍ୟାଧର ସାହୁ
ଅଲିଶା ବଜାର, ପୋ: ଅ: ବୁଦ୍ଧନଚୌକ, କଟକ-୨
ଫୋନ୍ ନମ୍ବର—୨୪୭୯୭

**ମୂଲ୍ୟ—୧-୭୫** **ଏକଟଙ୍କା ପଚସ୍ତର ପଇସା ମାତ୍ର**

ଭବିଷ୍ୟ ପୁରାଣ

# ସୂଚିପତ୍ର





ଭବିଷ୍ୟ ପୁରାଣ ସୂଚିପତ୍ର ସମାପ୍ତ



# ଭବିଷ୍ୟପୁରାଣ

## ପ୍ରଥମ ଅଧ୍ୟାୟ



ଖର୍ବଂ ସ୍ଥୂଳ ତନୁଂ ଗଜେନ୍ଦ୍ର ବଦନଂ ଲମ୍ବୋଦରଂ ସୁନ୍ଦରମ୍ ।
ପ୍ରସ୍ୟନ୍ଦନ୍ ମଧୁଗନ୍ଧଲୁବ୍ଧ ମଧୁପ ବ୍ୟାଲୋଲ ଗଣ୍ଡସ୍ଥଳମ୍
ଦନ୍ତାଘାତ ବିଦାରିତା ରିତୈବରେ ସିନ୍ଦୂର ଶୋଭାକରଂ ।
ବନ୍ଦେ ଶୈଳସୁତାସୁତଂ ଗଣପତିଂ ସିଦ୍ଧି ପ୍ରଦଂ କାମଦଂ ॥



### ବନ୍ଦନା

ବନ୍ଦଇ ତୁମ୍ଭ ଚରଣେ ଦେବ ବିଘ୍ନେଶ୍ୱର
ପାଶ ଅଙ୍କୁଶ ଆୟୁଧ ଶୋଭେ ବେନିକର ।
ପୃଥୁଳ ତୁମ୍ଭ ଉଦର ଦିଶଇ ସୁନ୍ଦର
ଗଜର ସଦୃଶ ମୁଖ ନାମ ଲମ୍ବୋଦର ।
ଅନାଦି ନାଥର ତୁମ୍ଭେ ଅଟହେ ନନ୍ଦନ
ଅମୃତ ପାନରେ ସଦା ହରଷିତ ମନ ।
ଯଜ୍ଞ ଆଦିରେ ତୋହର ଅଗ୍ରେ ହୁଏ ପୂଜା
ଉତ୍ତରୀ ତୋହର କଣ୍ଠେ ଅଟେ ନାଗରାଜା ।
ପ୍ରସନ୍ନେ ମୋକଣ୍ଠେ ବସ ଆହେ ସିଦ୍ଧି ଦାତା
ଆଜ୍ଞାହେଲେ ଲେଖିବି ମୁଁ ପୁରାଣ ବ୍ୟବସ୍ଥା
ଗଙ୍ଗାଧର ପାଣି ମୂର୍ଦ୍ଧ୍ନି ଅଟେ ନିରମାଖି
ବରଦେଲେ ସଂସ୍କୃତକୁ ପ୍ରାକୃତରେ ଲେଖି ।
କୃପାକଲେ ଲେଖିବଇଁ ଭବିଷ୍ୟ ପୁରାଣ
ବ୍ୟାସଦେବ କରିଛନ୍ତି ଯୋଗ ଯା ଲେଖନ ।
ଅଷ୍ଟାଦଶ ପୁରାଣର ନବମେ ଭବିଷ୍ୟ
ସିଦ୍ଧ ସମ୍ପ୍ରର ବଚନେ କଲେକ ପ୍ରକାଶ ।
ଏହି କ୍ଷିତି ମଣ୍ଡଳରେ ଯୁଗମାନଙ୍କରେ
ସିଦ୍ଧି-ପୀଠକଲେ ପ୍ରଭୁ ଗୋଦାବରୀ ତୀରେ
ଅନାଦି ଆଗରେ ଆଦି ବିଧାନ ପୁଛନ୍ତି
ସାକ୍ଷୀରୂପେ ବେଦପଢ଼ି ଶ୍ରୋତାହିଁ ଅଟନ୍ତି ।



## ଗୋଦାବରୀ, ପ୍ରଭାସ, ପୁଷ୍କରତୀର୍ଥ ନଦୀମାନଙ୍କର ଜନ୍ମ ବିବରଣ

ଆଦିଉବାଚ

ଆଦିକହୁଛନ୍ତି ଅନାଦିଙ୍କି ଧ୍ୟାନ କରି
ସତ୍ୟ ତ୍ରେତୟା ଦ୍ୱାପର କଳିଯୁଗ ସ୍ମରି ।
ଗୋଦାବରୀ ଜନ୍ମସ୍ଥାନ ନିରାଲମ୍ବ ଭୂମି
ସୁରଗଣ ସିଦ୍ଧ ବୃନ୍ଦେ ନ ପାରନ୍ତି ଚିହ୍ନି ।
ପରମ ଅନାଦି ଆଦି ବ୍ରହ୍ମା ତିନିଜଣ
ତହିଁବସି ପୁଚ୍ଛାକଲେ ଭବିଷ୍ୟ ବିଧାନ ।
ଆଦି ପଚାରିଲେ ତହିଁ ଯୋଡ଼ି ବେନିକର
ଗୋଦାବରୀ ଜନ୍ମ ମୋତେ କହ ଧ୍ୟାନେଶ୍ୱର

ଆଗଣ ସବଙ୍କ ଅଷ୍ଟ ବୃଦ୍ଧିର ସାଗର
ବ୍ରହ୍ମଠୁ ଶୁଣିଛି ଗ୍ରନ୍ଥ ମାନଙ୍କର ସାର ।

ଅନାଦି ଉବାଚ

ଅନାଦି ବୋଲନ୍ତି ଆଦି ପୁଚ୍ଛାକଲୁ ଯାହା
ବ୍ରହ୍ମା ବଚନର କରଣ ଘେନବେ ଯେ ତାହା ।
ସତ୍ୟଶାନ୍ତ ଦୟା କ୍ଷମା ସ୍ମରକଲା ଘେନ
ଉକବନ୍ତୁ ସାମାଥର୍ବ ଚତୁଷ୍ପଦ ଜାଣି ।
ଶିଶୁବେଦ ଆଦିକର ସତ୍ୱ ରଜ ତମ
ଦେହଧାରୀ ତ୍ରିଗୁଣ ଜଡ଼ିତ ପୂର୍ଣ୍ଣକାମ ।
ବେଦମତି ଧାତ କନ୍ୟା ଅଂଶେ କଲି ସଙ୍ଗ
ପାଞ୍ଚଅଗ୍ନି ଜାତ ହୋଇ ଅରୂପେ ଅନଙ୍ଗ ।
ଅଗ୍ନି ପୁରାଣରେ ଅଗ୍ନି ଦେବର ଉକତ
ସେଅଗ୍ନି ସର୍ବଙ୍କ ଜ୍ୟେଷ୍ଠ ତହିଁ ଉତପତ୍ତି ।
ପ୍ରଧାନ ତେତିଶ ନଦୀ ଜମ୍ବୁଦ୍ୱୀପେ ହୋଇ
ସର୍ବଶ୍ରେଷ୍ଠ ତଥା ନଦୀ ଗୋଦାବରୀ କହି ।
ସତ୍ୟ ଯୁଗେ ସୌରାଷ୍ଟ୍ର ଯେ ଏନଦୀ ବୋଲନ୍ତି
ଏନଦୀ ମେରୁକନ୍ଦରୁ ବହି ଆସୁଅଛି ।
ସୁତଳ ପୁରରୁ ସ୍ରୋତ ବହେ ନିରବଧି
ମେରୁଠାରୁ ଏକାମ୍ରର ବନଯାଏ ଭେଦି ।
ଏକାମ୍ର ବନରୁ ସେହୁ ମର୍ତ୍ତେ ଧାରାବର
ବହଇ ପଶ୍ଚିମ ଦିଗୁଁ ପାତାଳ ବମ୍ବର ।
ଏକାମ୍ର ବନରେ ତିନ ପର୍ବତ ମୂଳରୁ
ଯେ ନଦୀ ମର୍ତ୍ତ୍ୟକୁ ଧାରା ବହେ ଫୁଟିମେରୁ ।
ତିନ ପର୍ବତରେ ତିନ ଦେବତା ଅଛନ୍ତି
ସେ ଦେବତା ମୂଳେ ସର୍ବ ଦେବତା ଖଟନ୍ତି ।
ହଂସବୋଲି ପର୍ବତେକ ନାମ ରହିଥିଲେ
ଏକାଦଶ ଦେବତା ଯେ ତାହାଙ୍କର ମୂଳେ ।
ସେହିପର୍ବତରେ ଯେତେ ଦ୍ରୁମଲତା ମାନ
ଦଶକୋଟି ଦେବତାକୁ କଲେକ ସେ ଧ୍ୟାନ ।
ପରମହଂସ ପର୍ବତେ ସେବାକଲା ହୋଇ
ଏକାଦଶ କୋଟି ଦେବତାର ପାଦେ ଧ୍ୟାୟି ।
ନୀଳ ପର୍ବତରେ ତେତିଶକୋଟି ସର୍ବଦେବ
ବିଦ୍ୟା ଯେ ଅବିଦ୍ୟାମାନ ତହିଁକଲେ ଠାବ ॥
ଗମ୍ୟ ଯେ ଅଗମ୍ୟ ଭୂମି ନିରାଲମ୍ବ ସ୍ଥାନ
ସର୍ବଁସର୍ବେ କଲେ ମିଳି ସିଦ୍ଧି ପୀଠମାନ ।

ପଶ୍ଚିମ ଦିଗରୁ ନଦୀ ବହି ଆସୁଥିଲା
ପ୍ରଳୟ ସ୍ଥାନ ଦେଖିଣ ମନେ ବିଚାରିଲା ।
ଦ୍ୱାପର ଯୁଗରେ ଗୋପେ ଶ୍ରୀରାଧା ମାଧବ
ଜରାସନ୍ଧ ଭୟେ କର ଦ୍ୱାରକାରେ ଠାବ ।
ଏପଥେ ଗମିଲେ ମୋର ଶ୍ରେଷ୍ଠପଣ ଯିବ
ପୋତେ ବତିଶ ନଦୀରେ ଭେଦମୋର ହେବ
ନଦୀଶ୍ରେଷ୍ଠ ମୋର ନାମ ଦୂର ହୋଇଯିବ
ମୃତ୍ତିକା ସ୍ମରଣ ମନ୍ତ୍ର କଲେ ସେହୁ ଠାବ ।
ମନ୍ତ୍ରପାଠ କରନ୍ତେଣ ଠାବହିଁ ଦିଶିଲା
ପ୍ରଳୟକୁ ପଛେରଖି ଦକ୍ଷିଣେ ଗମିଲା ।
ଯାଇଣ ମିଳିଲାଧାରା ଲବଣ ଜଳରେ
ଦେଖିକର ବିଚାରିଲେ ବରୁଣ ମନରେ ॥
ପୁଣ୍ୟବତୀ ନଦୀ ଏହୁଁ କାହୁଁ ବା ଅଇଲା
ଲବଣ ଜଳେ ନ ମିଶି ମୋପାଶେ ମିଳିଲା ।
ଜଳଅଧିପତି ମୁହିଁ ଅଟେ ନୃପବର
ମୋତେ ସେନାପତିକଲେ ଅନାଦି ଠାକୁର ॥
ମୋ ଜଳେ ନ ମିଶି ସେହୁ ଗୋଟି ନ ଛାଡ଼ିଲା
ନ ପୁଣ ଅଇର ହୋଇ ମୋହର ଅଇଲା ।
ଏମନ୍ତ ବିଚାର କରି ବରୁଣ ରାଜନ ।
ଅନାଦି ନାଥଙ୍କୁ ତହୁଁ ମନେ କଲା ଧ୍ୟାନ
ଧ୍ୟାନରେ ଦେଖିଲେ ତହିଁ ଅନାଦି ମାଧବ
ସିନ୍ଧୁ ସମୁଦ୍ରର ବନେ କରାଇଲେ ଠାବ ।
ସର୍ବତନ୍ତ୍ରା ପାଶୋରଣ ଉଦବନ୍ଧ ହୋଇ
ସିନ୍ଧୁ ସମୁଦ୍ରର ବନେ ମିଳିଲେକ ଯାଇ ।
ସିଂହାସନେ ବସିଛନ୍ତି ଅନାଦି ଠାକୁର
ଆଦିନାଥ ଦେବବର ତାହାଙ୍କ ଆଗର ।
ଦଣ୍ଡରେ ତିରଣ ଧରି ପାଦରେ ଶୋଇଲା
ନମୋ ଅବ୍ୟକ୍ତମୂରତି ମୁଖେ ଉଚ୍ଚାରିଲା ।
ଅନାଥର ନାଥତୁମ୍ଭେ ଅନାଦି ଅଚ୍ୟୁତ
ଜଳ ମଧ୍ୟରେ କରିଛ ମୋତେ ନୃପନାଥ ।
ଅମିତ ଦେଖିଲି ଆଜ ଅନ୍ତରରେ ଜାଣି
ଅନେକ କଲଇଁ ଧ୍ୟାନ ନ ଥିବକି ଶୁଣି ।
ବରୁଣକୁ ସେ ଅନାଦି ନାରାୟଣ କହି
ଉଠିଣନୃପତି ଆମ୍ଭ ବାକ୍ୟ ଶୁଣ ତୁହି ।
ହିତ କରିଣ ଅଇଲୁ ମନେ ଏତେପଥ
ସ୍ୱୟଂ ବିଚାରିଲୁ ଏଥେ ଶତ୍ରୁ ଉପଗତ ।

ଗୋଦାବରୀ ନଦୀ ଦକ୍ଷିଣକୁ ଚଳିଗଲେ
ଚୋର ଜଳେ ମିଶି ସେହୁ ଗୋତ୍ର ନ ଛାଡ଼ିଲେ
ତେଣୁ ମନର ମଧ୍ୟରେ ଭୟ ଜାତ କଲୁ
କି ବିଧାନ ପୁଚ୍ଛିବାକୁ ଏଠାକୁ ଅଇଲୁ ।
ଯାଅ ତୁମ୍ଭ ନିଜବାସେ ଭୟ ଦୂର କରି
ଗୋଦାବରୀ ନଦୀ ଚୋର ନୁହଇ ବଇରୀ ।
ଆମ୍ଭର ଉଆଣ ସେହୁ ଜନ ପରିତ୍ରାଣ
ବତିଶ ନଦୀରେ ଶ୍ରେଷ୍ଠ ଗୋଦାବରୀ ନାମ ।
ଏ ନଦୀରେ ଭେଦ ସ୍ରୋତ ଆଉ ସର୍ବବିଧ
ତୋ ଜଳେ ମିଶିଲେ ପାଶୋରିବେ ଗୋତ୍ରଭେଦ

ବରୁଣ ଉବାଚ

ଅନାଦି ବଚନେ ବୋଲେ ବରୁଣ ରାଜନ
ଆନ ନଦୀ ମାନଙ୍କର କହନ୍ତୁ ଜନମ ।

ଅନାଦି ଉବାଚ

ଆଦିଙ୍କ ଆଗେ ଅନାଦି ବିଧାନ ବଚନ !
ଗୋଦାବରୀ ଶ୍ରେଷ୍ଠ ନଦୀଙ୍କର ରମ୍ୟସ୍ଥାନ ।
ହଂସ ପର୍ବତ ଉପରେ ହବ୍ୟଋଷି ବସି
ହଂସକୁ କରନ୍ତି ଧ୍ୟାନ ଏକାକ୍ଷର ଘୋଷି ।
ଶ୍ୱେତ ବରାହ କଳ୍ପରେ ସତ୍ୟ ନାମେ ଯୁଗ
ବ୍ରହ୍ମ ନାମେ ସମ୍ବତ୍ସର ବଇଧୃତ ଯୋଗ ।
କେତେ କଳ୍ପ ଧ୍ୟାନ କଲେ ନ ପାଇଲେ ଅନ୍ତ
ପୁଣି ହଂସରୂପେ ମୁହିଁ ହେଲି ଉପଗତ ।
ମୋତେ ଦେଖି ହବ୍ୟ ଋଷି ଧ୍ୟାନ ଆରମ୍ଭିଲେ
ଗୋଦାବରୀ ପୂର୍ବ ଜନ୍ମ ମୋତେ ପୃଚ୍ଛାକଲେ
ବିଧାନେ କହିଲି ମୁହିଁ ତାହାଙ୍କ ଆଗର
ସତ୍ୟଯୁଗେ ପ୍ରାଣିଙ୍କର ସତ୍ୟ ବ୍ୟବହାର ।
ନ ଥିଲା ଯେ ତୀର୍ଥମାନ ନଥିଲା କଷଣ
ଗୃହେତ ଅଶୀବର୍ଷ ଥିଲା ଆୟୁମାନ ।
ନିତ୍ୟପୁରରୁ ମର୍ତ୍ତ୍ୟକୁ ପଥ ପଡ଼ିଥାନ୍ତି
ଜନମାନେ ଗତାଗତେ ଦର୍ଶନ କରନ୍ତି ।
ଦର୍ଶନେ ମୁକତ ଲଭି ଯାନ୍ତି ନିଜପୁର
ଯୁଗ ଶେଷଯାଏ ଲୀଳା ଖେଳର ମନ୍ଦର ।
ହଂସ ଋଷିଙ୍କୁହିଁ ମୁହିଁ ସ୍ୱରୂପ କହିଲି
ଗୋଷ୍ଠଦା ଯାଗ କରନ୍ତେ ନଦୀ ଗଲେମେଲି ।
ଗୋମୁଖ ପର୍ବତେ ଏହି ତିନି ଶାଖାହୋଇ
ହଂସ ସୁହଂସ ପରମ- ହଂସ ପର୍ବତହିଁ ।
ତିନି ନାମ ବନ୍ଧି ଶିରେ ହ୍ଲାଦ ଆହ୍ଲାଦ
ଗିରିଶଙ୍କ ତିନିଧାରେ ବହେ ସ୍ରୋତ ଭେଦ ।
ସେ ଧାର ହୋଇଲେ ଏକ ପୂର୍ବମୁଖ ହୋଇ
ପ୍ରଳୟ ସ୍ଥାନ ଦେଖିଣ ମନେ ଭୟ ପାଇ ।
ତହିଁ ଧାରା ବହିଲେ ଯେ ଦକ୍ଷିଣ ମୁଖରେ
ସ୍ରାବିଲେ ସେ ରସମାନ ଅମିୟ ଭଣ୍ଡାରେ ।
ନଦୀମାନଙ୍କରେ ଶ୍ରେଷ୍ଠ ଗୋଦାବରୀ କହି
ଗୋମୁଖ ପର୍ବତୁ ନଦୀ ଜାତ ଅଛି ହୋଇ ।
ଅପାରୁ ଅପାର ନାମ ନଦୀମାନଙ୍କର
ଅନାଦି କହିଲେ ହବ୍ୟଋଷିଙ୍କ ଆଗର ।
ସୁହଂସ ପର୍ବତେ ଗର୍ବ୍ୟ ମହର୍ଷି ମିଳିଲେ
ମିଛ ପୀଠ କରି ତହିଁ ଧ୍ୟାନ ଆରମ୍ଭିଲେ ।
ଶ୍ୱେତବାରାହ କଳ୍ପରେ ସତ୍ୟ ନାମେ ଯୁଗ
ବ୍ରହ୍ମନାମେ ସମ୍ବତ୍ସର ବହ୍ମନାମେ ଯୋଗ ।
ଅନେକ ସେ ଧ୍ୟାନ କଲେ ନ ପାଇଲେ ଲେଶ
ତାର ଧ୍ୟାନବଳେ ମୁହିଁ ହୋଇଲି ସୁହଂସ ।
ସୁହଂସ ରୂପରେ ମୁହିଁ ଦରଶନ ଦେଇ
ମୋତେ ଦେଖି ନଦୀଙ୍କର ନାମ ସେ ପୁଚ୍ଛଇ ।
କେମନ୍ତେ ନଦୀଏ ହେଲେ ସଂସାରେ ପ୍ରଚୁର
କହି ହଂସରୂପୀ ମୋତେ ଏଥିର ଉତ୍ତର ।
ବୋଲନ୍ତି ସୁହଂସ ତୁମ୍ଭେ ଶୁଣ ଗର୍ବ୍ୟଋଷି
ଯାହା ପୁଚ୍ଛାକଲ ମୋତେ କହିବା ପ୍ରକାଶି ।
ଗୋଦାବରୀଠାରୁ ସର୍ବ ନଦୀ କଲେ ଯାତ
ଗୋଟି ଗୋଟି କରି ନଦୀ ହୋଇଲେ ବିଖ୍ୟାତ
ପ୍ରୟାଗ ବୋଲିଣ ତୀର୍ଥ ଜନ-ମନୋହର
ସର୍ବ ପିତୃଗଣଙ୍କର ମୋକ୍ଷର ମନ୍ଦିର ।
ଯେତେହୁ ସୁପୁତ୍ର ହୋଇଣ ପିଣ୍ଡ ଉତ୍ସର୍ଗନ୍ତି
ସ୍ୱର୍ଗ ମୋକ୍ଷଦ୍ୱାରୁ ପିତୃ ହସ୍ତପାତ ନ୍ୟନ୍ତି ।
ପ୍ରଭାସ ତୀର୍ଥକୁ ଯାଇ ଯେ ଦଅନ୍ତି ଶ୍ୱାସ
ଶତଜନ୍ମ ସ୍ୱର୍ଗପୁରେ କରନ୍ତି ସେ ବାସ ।
ଅଷ୍ଟାଦଶ ପୁରୁଷଙ୍କୁ ଉଦ୍ଧାର କରନ୍ତି
ଭକ୍ତି ମୁକ୍ତି ଧନ ଜନ ଜନ୍ମେ ଜନ୍ମେ ପାନ୍ତି ॥
ପୁଷ୍କର ବୋଲିଣ ତୀର୍ଥ ହବ୍ୟ ଅର୍କ ସ୍ଥାନ
ସେ ତୀର୍ଥ ପଶ୍ଚିମେ ବାଞ୍ଛାବନ୍ତ ମନୋରମ ।
ଯେ ଯାହା ବାଞ୍ଛନ୍ତି ଫଳ ଲଭନ୍ତି ସତ୍ୱରେ
ଆପଣେ ବସିଲେ ସେହୁ ବାଗବଗାନ୍ତରେ ।

ଅନାଦି କହିଲେ ଆଦି ମନୋରମ କରି
ସାକ୍ଷୀରୂପେ ବେଦବର ଶ୍ରୁତିପଥେ ଧରି ।
ସିଦ୍ଧ ସମ୍ବତ୍ସର ବନେ ଭବିଷ୍ୟ ପୁରାଣ
ଦ୍ୱିଜ ଗଙ୍ଗାଧର ଧ୍ୟାୟି ଲୋକଙ୍କ କାରଣ ।
ଇତି ଶ୍ରୀ ଭବିଷ୍ୟପୁରାଣେ ଆଦିଅନାଦି ସମ୍ବାଦେ
ସିଦ୍ଧ ସମ୍ବତ୍ସର ବନେ ବ୍ରହ୍ମା ଶ୍ରବଣେ ନାମ ।
ପ୍ରଥମୋଽଧ୍ୟାୟଃ ।

—*—

## ଦ୍ୱିତୀୟ ଅଧ୍ୟାୟ
## ଅଠାଇଶଗୋଟି ତୀର୍ଥ ନଦୀର
## ଜନ୍ମ ବିବରଣ

ଆଦି ଉବାଚ
ଆଦି କହନ୍ତି ଅନାଦି ନାଥଙ୍କ ଅଗ୍ରତେ
ସର୍ବ ନଦୀମାନେ ଜାତ ହୋଇଲେ କେମନ୍ତେ
ଏହା କହନ୍ତୁ ଭବିଷ୍ୟ କର୍ମମାନ ଜାଣି
ସାକ୍ଷୀରୂପେ ବେଦବର ସେ ପ୍ରସ୍ତାବ ପୁଣି ।
ଅନାଦି ଉବାଚ
ଅନାଦି ବୋଲନ୍ତି ଆଦି ହେଉ କର ମନ
ସଂକ୍ଷେପି କହିବା ଏଥି ଭବିଷ୍ୟ ପୁରାଣ ।
ପରମହଂସ ପର୍ବତେ ଗର୍ବ୍ୟଋଷି ବସି
ଧ୍ୟାନେ ଅପାର ଅନନ୍ତ ନାମ ଗୋଟି ଘୋଷି ।
ଶ୍ୱେତବରାହ କଳ୍ପରେ ବ୍ରହ୍ମ ଶତାମିକ
ଧ୍ୟାନକରି ଗର୍ବ୍ୟଋଷି ନ ପାଇଲେ ଅନ୍ତ ।
ପରମହଂସ ସ୍ୱରୂପେ ଉଭା ହେଲ ଯାଇ
ଦେଖିକରି ଗର୍ବ୍ୟଋଷି: ଆମ୍ଭଙ୍କୁ ପୁଚ୍ଛଇ ।
ମହାନଦୀରୁ ସକଳ ନଦୀ କେହ୍ନେ ଜାତ
ମୋହର ସନ୍ଦେହ ଫେଡ଼ କହି ଏ ବୃତ୍ତାନ୍ତ ।
ତାହାଙ୍କ ବଚନେ ମୁହିଁ ତୀର୍ଥଙ୍କ ମହିମା
ଆଦ୍ୟନ୍ତ କରି କହିଲି ସର୍ବ ଗୁଣ ସୀମା ।
ଗୋମତୀ ଯେ ତୀର୍ଥରାଜ ଭୟଭ୍ରାନ୍ତ ହରେ
ମାଘ ଶୁକ୍ଳ ସପ୍ତମୀରେ ସ୍ନାନଦାନ ଯେ କରେ ।
ଭୌମିକ ଋଷିଙ୍କଠାରୁ ନଦୀ ଉତପତ୍ତି
ସ୍ନାନେ ବ୍ରହ୍ମଘାତ ଦୋଷ ସମସ୍ତ ଦହନ୍ତି ।

ଗଙ୍ଗାନାମ୍ନୀ ନଦୀ ଯେହୁଁ ଅଟେ ଶ୍ରେଷ୍ଠତର
ଶ୍ରୀପାଦରୁ ବହୁଅଛି ତହିଁ ତିନି ପୁର ।
ପତିତୋଦ୍ଧାରିଣୀ ସେହୁ ମର୍ତ୍ତ୍ୟେ ଉତପତ୍ତି
ସ୍ନାନଦାନ ମରଣ ମାନେ ପବିତ୍ର ହୁଅନ୍ତି ।
ଯମୁନା ନାମରେ ନଦୀ ଯମର ଭଗିନୀ
ବିବିଧ ଯୋଗରେ ନାମ ଭାସ୍କର ଦୁଲଣୀ ।
ଶାନ୍ତନୁଜ ଅପ୍ରମେୟ ଧୂର୍ତ୍ତିପଣ କଲେ
ତପ କରିବାରୁ ନାମ ତପସ୍ୱୀ ହୋଇଲେ ।
ତ୍ରିପଦା ନାମେଣ ନଦୀ ତ୍ରିତାପ ସଂହରେ
ଆତ୍ମଜ କର୍ମଜ ପାପ ସର୍ବ ଦୂର କରେ ।
ଗୁଆଧୃତେ ହୋମ କଲେ ଯଥାଶକ୍ତି ଘେନି
ଆତ୍ମଜ କର୍ମଜ ପାପ ଦହଇ ବହନି ।
ସରସ୍ୱତୀ ନଦୀ ତଟେ କୁଶୋଦକ ସ୍ରୋତା
ବୃଷଳୀ ପାତକ ହରେ ସ୍ନାନଦାନେ କରତା ।
ଗୟାରେ କରିଲେ ସ୍ନାନ ମନ ପୂର୍ଣ୍ଣ କରି
ସପ୍ତବାର ଅବଗାହେ ଲଭି ଦିବ୍ୟନାରୀ ।
କାବେରୀ ନଦୀରେ ସ୍ନାନ କରିକଲେ ତପ
ତନ୍ତ୍ର ମନ୍ତ୍ର ସିଦ୍ଧହୁଏ ଯେବା କରେ ଜପ ।
ଗଙ୍ଗା ସାଗରରେ ସ୍ନାନ କପିଳ ଦର୍ଶନ
କଲେ ପିତୃପିତାମହ ଲଭନ୍ତି ସୁପୁଣ୍ୟ ।
ସ୍ୱର୍ଣ୍ଣଦୀରେ ଶେଷ କାଳେ ଶ୍ୱାସ ଯେହୁଁ ଦ୍ୟନ୍ତି
ଶ୍ରୀଭୁଜେ କରିଣ କୋଳ ନନ୍ଦ୍ୟକୁ ନଅନ୍ତି ।
ସ୍ୱର୍ଣ୍ଣଦୀ ଗୁମ୍ଫା ଘାଟରେ ବଟ ମୂଳେ ଯାଇ
ଶଠକରି ଆତ୍ମା ରାମ ମନରେ ଧରଇ ।
ସହସ୍ର ଜନ୍ମର ପାପ ହୁଅଇ ମୋଚନ
ଏନେ ଧ୍ୟାନ କରଇ ଯେ ଶ୍ରୀମଧୁସୂଦନ ।
ଖରସ୍ରୋତାପଦ୍ମା ନଦୀ ପବିତ୍ର କାରିଣୀ
ଉତ୍ତରବାହିନୀ ଗଙ୍ଗା ଖରସ୍ରୋତା ଘେନି ।
ଆଲିଙ୍ଗନ କରିଣ ସେ ସର୍ବମନ ହରେ
ଧନ୍ୟ ପଦ୍ମାବତୀ ନାମ ସଂସାର ଉଦ୍ଧାରେ ।
କାଶୀକ୍ଷେତ୍ରେ ପ୍ରବାହିନୀ ମଣିକର୍ଣ୍ଣିକାଏ
କ୍ରମେ କ୍ରମେ ଯାଇଁଣ ସେ ଗଙ୍ଗା ପରଶଏ ।
ସ୍ୱଧା ବୋଲି ଅପୂର୍ବିକ ମୁଖେ ଅଗ୍ନି ଦେଇ
ଆବର ଯୋନିଯାତନା କେବେହେଁ ନ ପାଇ
ଶ୍ୱେତଗଙ୍ଗା ସୁରଧୃତ ଋଷି କଲେ ଜାତ
ତପୋବନ୍ତ ଦେବାସୁର କର୍ମକାର ତତ୍ତ୍ୱ ।

ଅବଗାହି ଦେବ ସ୍ୱାମୀ ପୁରୁଷ ଉତ୍ତମ
ଦରଶନେ କଲେ ହରେ ସର୍ବ ପାପମାନ ।
ପୁଣ୍ୟତୋୟା ବେଣୀନଦୀ ବ୍ରହ୍ମ ଅଙ୍ଗଜାତ
ଧରଣୀ ପଦେ ଦ୍ୱିଧା ହୋଇ ପ୍ରବାହିତ ।
ଦେବାସୁର ନରମାନେ କରିଣ ସ୍ନାନଦାନ
ପାପ ଦହନ କରିଣ ନ ଲଭନ୍ତି ଜନ୍ମ ।
ମଣିମଦା ନାମେ ନଦୀ ହେମରାଜ ସୁତା
ରାଜର୍ଷିର ବଂଶଜା ପୁଣ୍ୟର କରତା ।
ଦେଖିଣ ଶମନରାଜା ବଡ଼ ଭୟ କଲେ
ସ୍ନାନେ ଘୋର ପାତକୀଏ ମୁକତି ଲଭିଲେ ।
ଯୋଗ କଳା ଯେବଣ ନଦୀରେ ହେଲେ ଜାତ
ଶ୍ରେଷ୍ଠତର ନାମ ପାଇ ହୋଇ ପ୍ରବାହିତ ।
ଧୂର୍ଜ୍ଜଟି ନଦୀର ସ୍ରୋତ ଅପାରୁ ଅପାର
ସଂସାର ମଧ୍ୟରେ ନାମ ବୋଲାଇସେ ସାର ।
ଶୌନ ଋଷିଙ୍କର ସୁତ ମୋକ୍ଷ ରାଜା ଗଲେ
ସେ ନଦୀ କୂଳରେ ଦିନେ ତପ ଆରାଧିଲେ ।
ତପ ବଳରେ ଦେଖିଲେ ଅପୂର୍ବ ବିଧାନ
ବ୍ୟାସଦେବ ଜୈମିନିଙ୍କି କହନ୍ତି ପୁରାଣ ।
ଜାତି ମାଳା କରି ବର୍ଣ୍ଣଭେଦ କହୁଛନ୍ତି
ଦେଖିଣ ସେ ମୁନିବର ମନେ କଲେ ଭ୍ରାନ୍ତି ।

ଶୌନଋଷିରୁବାଚ

ଶୌନଋଷି ପୁଚ୍ଛା କଲେ ବ୍ୟାସଙ୍କ ଅଗ୍ରତେ ।
ଜାତିମାଳା ଭେଦ ମୋତେ କହ ତପୋବନ୍ତେ

ବ୍ୟାସ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ଋଷିବର
କହିବୁଁ ଜାତିର ମାଳା ବ୍ରତ ପୂର୍ଣ୍ଣ କର ।
ବ୍ୟାସଙ୍କର ବଚନେ ସେ ତପ କଲେ ପୂର୍ଣ୍ଣ
ଲଭିଲେ ମୋକ୍ଷ କାରଣ ଭକ୍ତି ମୁକ୍ତି ଜ୍ଞାନ ।
ଗଣ୍ଡକୀ ନାମରେ ନଦୀ ମହିମା ସାଗର
ବୃଦ୍ଧ ଗଣ୍ଡକୀ ଅଟଇ ତାହାର ପିଅର ।
ଶ୍ୱେତ କଳ୍ପ ସମ୍ବତ୍ସର ସ୍ୱାହାସ୍ତମ୍ଭ ଋଷି
ଅଶ୍ୱତ୍ଥ ବୃକ୍ଷମୂଳରେ ତପ କଲେ ବସି ।
ଏମନ୍ତେ କେତେକ କଳ୍ପ ତପସ୍ୟା ସେ କଲେ
ତେବେ କାଳ ବ୍ରହ୍ମାପାଶେ ଶରଣ ପଶିଲେ ।
ତହୁଁ ଦଣ୍ଡଧନ୍ୱ ଋଷି ବ୍ରହ୍ମାଦେହୁଁ ସୃଷ୍ଟି
ବିନ୍ଧ୍ୟାଚଳ ପର୍ବତରେ ହୋଇ ବଜ୍ରକାଠ ।

ଜନ୍ମି ଶିବର ନାମେ ପାତାଳେ ଗମନ୍ତି
ଚୌଷଠି କାଠି ଗଣ୍ଡରେ ଭେଦ କହୁଛନ୍ତି ।
ନ ଦେଖନ୍ତି ଦେବ ନର ଦେଖନ୍ତି ଉରଗ
ପାତାଳେ ଦର୍ଶନ କରି କରୁଛନ୍ତି ଭୋଗ ।
ଲୌହବଳ ନାମେ ନଦୀ ତପ ମୁଦ୍ରାକର
ଯକ୍ଷାଦି ବ୍ରାହ୍ମ ପବିତ୍ର ହୁଏ ନାମ ସ୍ମର ।
ସର୍ବଜନ ମନୋରମ ଯେ କରେ ସ୍ନାନଦାନ
ସ୍ନାନମାନେ କୋଟି ଯଜ୍ଞ ଫଳ ଲଭେ ପୁଣ୍ୟ ।
ନାରାୟଣ ନାମେ ନଦୀ ପବିତ୍ର କାରଣୀ
ଆଦିତ୍ୟଙ୍କୁ ଯେତୁଁ ଦିଏ ଅର୍ଘ୍ୟ କରେ ଯେଣ ।
ଧନ୍ୟ ତାର ବେନକର ଧନ୍ୟ ଦେହ ତାର
ସପତ ପୁରୁଷ ତାର କରଇ ଉଦ୍ଧାର ।
ସ୍ୱର୍ଣ୍ଣଭଦ୍ରା ନାମେ ନଦୀ ଚନ୍ଦ୍ର ବ୍ରହ୍ମାସୁତା
ପବିତ୍ର କାରଣୀ ଶୋରୀ ନଗ୍ରେ ପ୍ରବାହିତା ।
ସେ ନଦୀ ଉତ୍ତରତଟେ କାମେଶ୍ୱରୀ ବନ
ତହିଁ ସିଦ୍ଧ ସାଧୁମାନେ କରନ୍ତି ଆଶ୍ରମ ।
ବୈତରଣୀ ନାମେ ନଦୀ ବଡ଼ତନ୍ତ୍ର ଜାଣି
ସର୍ବଜନ ମନୋରମ ଅର୍ଘ୍ୟ ବିନାଶିନୀ
ଯାଗ ହୋମ ତୀର୍ଥ ବ୍ରତ ଦାନ ଧର୍ମ ଆଦି
କାଳେ ଯେ କର୍ମ କରିଣ ରଖିବ ସମାଧି ।
ଦେହଧାରୀ ହୋଇ ଯେତୁ ପୁଣ୍ୟାତ୍ମା ପୁରୁଷ
ସ୍ନାନ କଲେ ଋତୁଫଳ ପାଇ ସେ ଅବଶ୍ୟ ।
ବ୍ରାହ୍ମଣୀ ନାମରେ ନଦୀ ଘୋର ବିପିନରୁ
ପୂର୍ବକୁ ବହି ଆସୁଛି ହିମାଦ୍ରି ଶିଖରୁ ।
ଯାର ପୂର୍ବ ଭାଗ୍ୟ ଥାଏ ସେ କରେ ଦର୍ଶନ
ମହା ଅରଣ୍ୟ ମଧ୍ୟରେ ତାର ଜନ୍ମସ୍ଥାନ ।
ଏକ ନଦୀର ତିନୋଟି ଶାଖା ହୋଇଫୁଟି
ଆସନ୍ତେଣ ପଥେ ଭେଟ ହୋଇଲେ ବମ୍ଭୋଷ୍ଟ୍ରୀ
ଦେଖିଲି ମାନବେ କହି ଅପୂର୍ବ ବିଧାନ
ସେଠାବରୁ ବହିଲେ ସେ ତିନଗୋଟି ନାମ ।
କୃଷ୍ଣଭଦ୍ରା ଶଙ୍ଖଭଦ୍ରା ଭାର୍ଗବୀ ବଦତ
ଏକବିଂଶ ନଦୀ ମଧ୍ୟେ ଅଟନ୍ତି ଗଣିତ ।
ଅନାଦି କହିଲେ ଆଦି ଅଗ୍ରତେ ବିଧାନ
ଶୁକଦେବେ ବେଦବର ପାଇ ତତ୍ତ୍ୱଜ୍ଞାନ ।
ସିଦ୍ଧ ସମ୍ବତ୍ସର ବନ ଗୋଦାବରୀ ତୀରେ
ଭବିଷ୍ୟ ପୁରାଣ କହେ ବେଦ ଉପସର୍ଗରେ ।

ଗଙ୍ଗାଧର ପାଣି କଲେ ପ୍ରକୃତେ ପ୍ରକାଶ
ଶ୍ରୀହରି ଚରଣ ତଳେ ନିତ୍ୟେ କରି ଆଶ ।
ଇତିଶ୍ରୀ ଭବିଷ୍ୟପୁରାଣେ ଆଦିଅନାଦି ସମ୍ବାଦେ
ସିଦ୍ଧ ସମ୍ପ୍ରଦାୟ ବଚନେ ଦାହ୍ଲା ଶ୍ରବଣେ
ନାମ ଦ୍ୱିତୀୟୋଽଧ୍ୟାୟଃ ।

—*—

## ତୃତୀୟ ଅଧ୍ୟାୟ
## ପ୍ରାଚୀ ଦେଶସ୍ଥ ଶାର୍ଦ୍ଦୂଳରଜାର ଉପାଖ୍ୟାନ ଏବଂ ବ୍ୟାସଦେବଙ୍କର ଜନ୍ମ

ଆଦି ଉବାଚ

ଆଦି ଯେ ପ୍ରକାଶ କଲେ ଅନାଦି ଅଗ୍ରତେ
ନଦୀଗୋଷ ଭେଦ କଲୁ ପ୍ରକାଶ ନିମନ୍ତେ ।

ଅନାଦି ଉବାଚ

ଆଦିଙ୍କୁ ଅନାଦି କହି ହେତୁ କରି ମନ
ମହାନଦୀ ବିଧି ବାଣୀ ବ୍ୟାସଦେବ ଜନ୍ମ ।
ଜନ୍ମ ଲଭି ଅଷ୍ଟାଦଶ ପୁରାଣ କହିଲେ
ନ୍ୟାୟଶାସ୍ତ୍ରର କାରଣ ବେଦବିଧି ଭୁଲେ ।
ଏଥୁ ଅନ୍ତରେ ଚରିତ ଶୁଣ ଦେଇ ମନ
ଭାର୍ଗବୀ ବଂଶୀକ ଋଷି ଧାର୍ମିକ ସୁଜନ ।
ଗୋଦାବରୀର ପଶ୍ଚିମ ତଟେ କଲେ ତପ
ଇଚ୍ଛେ ଅଦଭୁତେ ଜାତ ହୋଇ ଭୂମିକମ୍ପ ।
ତହିଁରୁ ବତିଶ ଋଷି ଜନମ ଲଭିଲେ
ପୂର୍ବମୁଖେ ଶୃଙ୍ଗମାନ ତହିଁରେ ମିଳିଲେ ।
ବିବର ଭେଦିଣ ମିଳି ନିଗମ କାନନ
ଯେ ଯାହାର ନାମ ଶୁଣି ଗଲେ ନିଜ ସ୍ଥାନ
ଗୋଦାବରୀଠାରୁ ନଦୀବେଗରେ ବହିଲେ
ବାରିନିଧି ଜଳେ ରହି ଗୋଷ ସୁମରିଲେ ।
ତହୁଁ ସପ୍ତନଦୀ ବହି ହେତୁ କରି ମନେ
ନଦୀର ପୂର୍ବଭାଗରେ କର୍ଷ୍ଣିନ୍ଧ୍ୟା କାନନେ ।
ସାରଗିରି ରାଜଗିରି ଯୁଗଳ ପର୍ବତ
ଉତପନ୍ନ ଋଷି ତହିଁ ତଳେ ହେଲେ ସ୍ଥିତ ।
ଗୋଦାବରୀ ଠାରୁ ସେହୁ ବହୁଦୂରେ ଥିଲେ
କରିଣ୍ଡହେ ଋଷିବର ଚରଣ ଆଣିଲେ ।
ବେନ ପର୍ବତର ମଧ୍ୟେ ଜଳଧାରା ବହି
ପୂର୍ବକୁ ମୁଖ କରିଣ ପ୍ରବାହିତ ହୋଇ ।
ଏମନ୍ତେ ସେ ପିତାମହ କର୍ମ ଆଜ୍ଞାଦିଲେ
ସେ ଦିନରୁ ମହାନଦୀ ନାମ ବୋଲାଇଲେ ।
ଏକ ନଦୀ ବେନ ନାମ ଗିରିରାଜ ବାଳା
ନାମେକ ଉତ୍ପନ୍ନ ଅନ୍ୟ ନାମ ତପୋସୃଳା ।
ଉତ୍ପନ୍ନ ପ୍ରବୃତ୍ତ ଅଟେ ବଂସାହିଁ ନ ଥାଇ
ସଂକଳ୍ପିତେ ସର୍ବେ ଲୋଡ଼ ତେଜେବ୍ରହ୍ମମୟୀ ।
ତାଠାରୁ ସମ୍ବାଦ ସତ୍ୟ ଶାନ୍ତ ଉପଗୃର
ସତ୍ୱ ଗୁଣରୁ ଉତ୍ପନ୍ନ ଋଷି ପରାଶର ।
ସକଳ ଗୁଣରେ ପୂର୍ଣ୍ଣ ପୂର୍ଣ୍ଣକଳା ଯେନ
ଆଜ୍ଞାବଳେ ଜନ୍ମ ମୃତ୍ୟୁ ଥାନ୍ତି ସେହୁ ଜଣି ।
ନଦୀ ପାର ହୋଇ ନିତ୍ୟ ତପ ଆଚରନ୍ତି
ଯେ ପ୍ରକାରେ ବେଦବ୍ୟାସ ହେଲେ ଉତପତ୍ତି ।
ସଂସାରେ ଜାଣନ୍ତି ବ୍ୟାସ କୈବର୍ତ୍ତିଣୀ ସୁତ
ଏଥିର ସନ୍ଦେଶ ଶୁଣ ଦୃଢ଼ ହିତ ଚିତ୍ତ ।
ମହାନଦୀ ନାମ ଗୋଟି ଉତ୍ତମେ ବୋଲାଇ
ପଶ୍ଚିମ ଦିଗରୁ ସେହୁ ଆସୁଅଛି ବହି ।
ଅତ୍ୟନ୍ତ ସୁନ୍ଦର ରୂପ କନ୍ଦର୍ପକୁ ବଳେ
ହରିଲା ସେ ଗିରିରାଜ ଧରି ତାକୁ ହେଳେ ॥
ଏମନ୍ତେଣ କନ୍ୟା ତହୁଁ ଗର୍ଭବତୀ ହୋଇ
ଦୁହିତା ଗୋଟିଏ ଜାତ ହୋଇଲାକ ତହିଁ ।
ଗିରିରାଜାର ଆଗରେ ତାକୁ ନେଇ ଦେଲା
ଏହୁ ତୋହର ଦୁହିତା ସମ୍ଭାଳ ବୋଇଲା ।
ଶୁଣିଣ ବଡ ସନ୍ତୋଷ ଲଭି ଗିରିରାଜା
ବୋଇଲା ଦେବି କାହାକୁ ଏମୋର ଆତ୍ମଜା ।

ଆଦି ଉବାଚ

କହନ୍ତି ଯେ ନାରାୟଣ ଅନାଦି ଅଗ୍ରତେ
ଏହା ଶୁଣିଣ ସନ୍ଦେହ ଜନମିଲା ଚିତ୍ତେ ।
ଗିରିରାଜ କି ନିମନ୍ତେ ନଦୀକି ହରିଲା
କାହା ଅଭିଶାପେ ନଦୀ ଯନ୍ତ୍ରଣା ପାଇଲା ।
ଆଦିଅନ୍ତ କରି କହ ଏଥର ବିଧାନ
ବେଦ ବାକ୍ୟ ନ୍ୟାୟ ଶାସ୍ତ୍ର ଉଦ୍ଧରିଣ ଜ୍ଞାନ

ଅନାଦି ଉବାଚ

ଆଦି ଆଗରେ ଅନାଦି ବୋଲନ୍ତି ବଚନ
ଶ୍ୱେତବରାହ କଳ୍ପରେ କୋରକ ନନ୍ଦଣ ।

ମୃଗ ନାଦ ବୋଲିକରି ବେନିଋଷି ଥିଲେ
ଗୋମତି ଋଷି ଶାପରୁ ମୃଗାମୃଗୀ ହେଲେ ॥
ସେବୋଇଲେ ତୁମ୍ଭେ ଦୁହେଁ ଅରଣ୍ୟରେଥିବ
ଦାସରାଜା ଗିରିମଧ୍ୟେ ତୁମ୍ଭଙ୍କୁ ଦେଖିବ ।
ପିତୃଶ୍ରାଦ୍ଧେ ମୃଗୟାର୍ଥେ ବନବାସେ ଯିବ
ତୁମ୍ଭ କ୍ରୀଡ଼ା ଅରଣ୍ୟରେ ନୟନେ ଦେଖିବ ।
ତୁମ୍ଭ ରତି ଦେଖି ରାଜା ଯିବ ମତିଭ୍ରମ
ବିନ୍ଦୁ ସ୍ଖଳିତ ହୋଇବ ହେଉ ପୂର୍ଣ୍ଣକାମ ।
ସେ ବିନ୍ଦୁକୁ ଚିଲପକ୍ଷୀ ଯେନ ଯାଉଥିବ
ଆରେକ ଚିଲ ଦେଖିଣ ଛିଦ୍ର ପ୍ରକାଶିବ ।
ଆକାଶୁ ପଡ଼ିବ ବିନ୍ଦୁ ନଦୀମଧ୍ୟେ ଯାଇ
ବେନି ଭାଇଙ୍କୁ ରୋହିତ ଗିଳିଦେବ ନେଇ ।
ଦଇବ ଯୋଗରେ ତାକୁ ଧୀବର ଧରିବେ
ଦଶରଜ ଅର୍ଥେ ରାଜା ଗ୍ରାମୁରେଣ ଦେବ ।
ଏକକନ୍ୟା ଏକପୁତ୍ର ସେ ମତ୍ସ୍ୟ ଗର୍ଭର
ନିଶ୍ଚି କାଟନ୍ତେ ହେବ ପ୍ରସବ ତତ୍ପର ।
କଇବର୍ତ୍ତକୁ ଡ଼କାଇ ଦୁହିତାଟି ଦେଲେ
ଦାସରାଜା ପୁତ୍ରଗୋଟି ଯତନେ ପାଳିଲେ ॥
ଏକଦିନେ ସେ ଦୁହିତା ଜଳଘାଟେ ଥିଲା
ପରାଶର ଋଷି ତପ ଉଦ୍ଦେଶେ ମିଳିଲା ।
ଦଇବେ ସେ କନ୍ୟାସଙ୍ଗେ କଲେ କ୍ରୀଡ଼ାରସ
ଅବତାର ହୋଇଣ ମୁଁ ଜନ୍ମି ବେଦବ୍ୟାସ ।
ଜନ୍ମଲଭି ଜୈମିନିଙ୍କୁ ପୁରାଣ କହିଲି
ବ୍ରହ୍ମ ପଦ୍ମ ବିଷ୍ଣୁ ଶିବ ଭାଗବତ କଲି ।
ନାରଦ ଯେ ମାର୍କଣ୍ଡ ଭବିଷ୍ୟ ପୁରାଣ
ଆଦି ଅନାଦି ଗମିଲେ ତହୁଁ ନିଜସ୍ଥାନ ।
ଏମନ୍ତେଣ ବେଦବର ଗଲେ ନିତ୍ୟପୁର
ବ୍ୟାସ ମହର୍ଷି କହିଲେ ଜୈମିନି ଆଗର ।

ଜୈମିନି ଉବାଚ

ଜୈମିନି ଋଷି ବୋଲନ୍ତି ବ୍ୟାସ ମୁଖଗ୍ରହିଁ
କଥାଏ ସୁଣିଲା ମୋର କହ ବ୍ରହ୍ମସାଇଁ ॥
ଅପୂର୍ବ ବିଧାନ ଏହୁ ବିଧିର ଉକତେ
ଗ୍ରହ ସଂସାର ଉଦନ ଉଦ୍ୟାନ ଉଦନ୍ତେ ।

ବ୍ୟାସଦେବ ଉବାଚ

ଏଥୁଅନ୍ତରେ ଚରିତ ଶୁଣ ଦେଇ ମନ
ପ୍ରାଚୀଦେଶରେ ଶାର୍ଦ୍ଦୂଳ ନୃପ ବିଦ୍ୟମାନ
ପାନ ଅମାତ୍ୟମାନଙ୍କୁ ପାଶକୁ ଗଲେ
ସଭା ଭିଆଇଣ ତହୁଁ ବିଗ୍ରହ ମାଗିଲେ ।
ମନ୍ତ୍ରୀ ମୁଖ ଗ୍ରହିଁ ରାଜା ବୋଲଇ ବଚନ
ଦିଗବିଜୟ କରିବି ମୁଁ ସାଜ ତୁମ୍ଭେ ସୈନ୍ୟ ।
ରାଜାଆଜ୍ଞା ପାଇ ମନ୍ତ୍ରୀ ବେଗେ ଚଳିଗଲା
ଡକାଇଣ ସଇନ୍ୟ ସକଳ ସଜାଇଲା ।
ହସ୍ତୀ ହୟ ପଦାତିକ ରଥୀ ଯେ ସାରଥୀ
ମାଲ ମାହୁନ୍ତାଦିମାନ ସର୍ବ ମୂଥପତି ।
ଦେଖିଣ ନୃପତି ତହୁଁ ଆନନ୍ଦ ଲଭିଣ
ଅନୁକୂଳ କରିଣ ସେ କଲେକ ଗମନ ।
ହସ୍ତୀ ସଜକରି ବେଗେ ମାହୁନ୍ତେ ନେଇ
ହସ୍ତୀ ମସ୍ତକରେ ବିଜୟକଲେ ନୃପସାଇଁ ।
ଘୋର ଅରଣ୍ୟକୁ ରାଜା କଲେକ ଗମନ
ଯାଆନ୍ତେ ପଥେ ଦେଖିଲେ ଅପୂର୍ବ ବିଧାନ ।
ଧୋବଣା ସର୍ପ ଗୋଟାଏ ଉନମତ ହୋଇ
ଚନ୍ଦ ନାଗୁଣୀ ସଙ୍ଗରେ ରତି କରୁଛଇ ।
ନରପତି ଦେଖି ମନେ ମନେ ବିଚାରିଲେ
ନୀଚହୋଇ ବ୍ରହ୍ମଯୋନି କରୂପେ ହରିଲେ ।
ତହୁଁ ସେ ନୃପତି ତାର ରସ ଭଗ୍ନ କଲେ
ରସ ଭଗ୍ନ ହୋନ୍ତେ ଯେଝାପୁରେ ଚଳିଗଲେ ।

ନାଗୁଣୀ ଉବାଚ

ନାଗୁଣୀ ଯାଇ ନାଗ ଆଗେ ଦୁଃଖ କହି
ମୋହର ବିନତି ତୁମ୍ଭେ ଘେନ ପ୍ରାଣସାଇଁ ।
ଗହନ କାନନେ ମୁହିଁ ଭ୍ରମିବାକୁ ଗଲି
ନିତ୍ୟ ସରୋବର ଜଳ ପାନ କରୁଥିଲି ।
ସେହି ସମୟରେ ପ୍ରାଚୀଦେଶ ନୃପବର
ବହୁ ସୈନ୍ୟ ସଙ୍ଗେ ଘେନ ମିଳିଲା ବନର ।
ମୋତେଦେଖି କାଳ ବୋଲିମାଇଲେ ଗୋଡ଼ାଇ
ଅତି ଭୟପାଇ ମୁହିଁ ବିକଳେ ଲୁଚଇ ।
ଆତ୍ମତୃପ୍ତା ବିନହିଲା ଅଟେ ନୃପବର
ବଡ଼ଇ ଅଜ୍ଞାନ ସେହୁ ଦୁରନ୍ତ ପାମର ।
ତାହାକୁ ବିନାଶ ତୁମ୍ଭେ କର ପ୍ରାଣେଶ୍ୱର
ନୋହିଲେ ତେଜିବି ମୁହିଁ ଆତ୍ମା କଳେବର ।

ନାଗ ଉବାଚ

ନାଗୁଣୀ ବଚନ ଶୁଣି ନାଗ କୋପମୂର୍ତ୍ତି
ପ୍ରାଚୀଦେଶକୁ ଗମିଲା ହୋଇ ଦ୍ରୁତଗତି ।

ଏଥିଅନ୍ତରେ ଚରିତ ଶୁଣ ଦେଇ ମନ
କାଳ ବିଢ଼ମ୍ବନ ଦେଖି ଶାର୍ଦ୍ଦୂଳ ରାଜନ ।
ପାତ୍ର ମନ୍ତ୍ରୀ ସେନା ଚତୁରଙ୍ଗ ବାହୁଡ଼ି ଚଳିଲା
ଭୁବନେ ମିଳି ଉତ୍ସବମାନ କରାଇଲା ।
ଦାନ ଧର୍ମ କରି ବିପ୍ର ଅର୍ଚ୍ଚନ ସେବନ
ମିଷ୍ଟାନ୍ନ ଭୋଜନ ଦେଇ ସେବେ ଗୁରୁଜନ ।
ଦକ୍ଷିଣା ପାଇଣ ବିପ୍ରେ କଲ୍ୟାଣ ବାଞ୍ଛନ୍ତି
ଜୈମିନି ଅଗ୍ରତେ ବ୍ୟାସ ପୁରାଣ ଭଣନ୍ତି ।
ଗଙ୍ଗାଧରପାଣି କଲେ ପ୍ରାକୃତେ ଲେଖନ
ବ୍ୟାସ ଅବତାର ପଦେ ଦେଇ ମନଜ୍ଞାନ ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।

—*—

## ଚତୁର୍ଥ ଅଧ୍ୟାୟ

### ନାଗ ନିକଟରେ ନାଗୁଣୀର ମିଥ୍ୟା ଭାଷଣ ଛଳେ ସ୍ତ୍ରୀଜାତିର ଚରିତ୍ର ବର୍ଣ୍ଣନା

#### ଜୈମିନିରୁବାଚ

ଜଇମିନି ବୋଲୁଛନ୍ତି ବ୍ୟାସ ପାଦ ଧରି
ଏଥିଅନ୍ତରେ ଚରିତ୍ର କହନ୍ତୁ ବିସ୍ତାରି ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
ପ୍ରାଚୀଦେଶରେ ମିଳିଲା ନାଗୁଣୀର ବର ।
ନାଗ ବିଚାରିଲା ନୃପ ବିନାଶିବି ବାଣୀ
କି ପ୍ରକାରେ ବିନାଶିବି ନୃପ ଶିରୋମଣି ।
ବୋଇଲା ନରପତିର ଚରଣ ପାଶ୍ରୋଇ
କ୍ଷୁଦ୍ର ରୂପ ହୋଇ ତାର ମଧ୍ୟେ ଥିବି ରହି ।
ଯେତେବେଳେ ନରପତି ଚରଣ ଗୁଞ୍ଜିବ
ଏହା ଭାବି ନାଗ କଲା ପାଶ୍ରୋଇରେ ଠାବ ।
ନିଶିରେ ନୃପତି କଲେ ପଲଙ୍କେ ଶୟନ
ନାଗୁଣୀର ବରପାଞ୍ଚେ ପୂର୍ବ କଥାମାନ ।
ନିଶି ଶେଷ ହେଉଁ ଉଦେ ହେଲେ ଦିନକର
ଶୟନ ତେଜିଣ ଉଠି ବସେ ନୃପବର ।
ସଖୀ ଆଗମନ ଜାଣି ଉଦବସ୍ତ୍ର ହୋଇ
ଶଯ୍ୟା ତ୍ୟାଗ କରିଣ ସେ ଉଠି ଉଭାହୋଇ ।
ଶାର୍ଦ୍ଦୂଳ ନୃପତି ଦେଖି ଉମାଦେବୀ ମୁଖ
ଅକସ୍ମାତେ ସେ ନାରୀର ହେଲା ଏକ ଛିଙ୍କ ।

ଉମାଦେବ୍ୟୁବାଚ

ବୋଇଲେ ସେ ଉମାଦେବୀ ସ୍ୱାମୀ-ମୁଖଚାହିଁ
କ୍ଷଣେମାତ୍ର ବସ ତୁମ୍ଭେ ମୋର ପ୍ରାଣସାଇଁ ।
କାହାକୁ ଦଣ୍ଡ ବିହିଛ ଆହେ ପ୍ରାଣନାଥ
ସମାଚାର ଫେଡ଼ି କହ ମୋହର ଅଗ୍ରତ ।
କମ୍ପାଇଁ ମୋନାସାଗ୍ରରେ ନୋହେଉଛିବାଣୀ
ରାଣୀର ବଚନ ଶୁଣି ବୋଲେ ନୃପମଣି ।

ଶାର୍ଦ୍ଦୂଳନୃପତି ଉବାଚ

ମୋହଜ୍ଞାନେ କାହାକୁ ମୁଁ ଦଣ୍ଡ ଦେଇନାହିଁ
ଆବର କଥାଏ ମୁହିଁ ମନେ ଭାବୁଥାଇଁ ।
ଯେଉଁଦିନ ବନେ ମୁହିଁ କଲି ଘୋରବନ
ପଥରେ ଯାନ୍ତେ ଦେଖିଲି ଅପୂର୍ବ ବିଧାନ ।
ଏକଟି ଧୋବଣୀ ରଙ୍କ ନାଗୁଣୀ ସଙ୍ଗରେ
ରତିକ୍ରୀଡ଼ା କରୁଅଛି ଦେଖିଲି ପଥରେ ।
ମତ ହୋଇ ଉଭ ସଙ୍ଗେ କରେ ରତିରଙ୍ଗ
ଦେଖିଣ ତାଙ୍କର କେଳି କଲଇଁ ବିଭଙ୍ଗ ।
ଏହାଛଡ଼ା ଅନ୍ୟଦୋଷ ଜ୍ଞାନେ କରିନାହିଁ!
ପାଶ୍ରୋଇରେ ଥାଇ ନାଗ ସକଳ ଶୁଣଇ ।
ଏହାକହି ନରପତି ତତପର ହୋଇ
ପୁଣି ଉମାଦେଈ ଛିଙ୍କି ବଚନ ବୋଲଇ ।
ତାହାରପତ୍ନୀ ବୋଲଇ ପ୍ରାଣେଶ୍ୱରେ ଗୁହିଁ
ଆଜଦିନ କେଣିକି ନ ଯାଅ ପ୍ରାଣସାଇଁ ।
ବିଦ୍ଧ ଆଚରଣ ଦେଖି ନୃପତିଁ ବସିଲା
ନାଗ ହୃଦେ ବିଚାରିଣ ଦିବ୍ୟରୂପ ହେଲା ।
ମିଚ ଜନର ବେଭାର ନ ବାଛଇ ଜାତି
ବିନା ଦୋଷରେ ବିନାଶ କରନ୍ତେ ନୃପତି ।
ଅଦୋଷୀ ନରପତିକି କରନ୍ତି ନିଧନ
ଦଇବ ସଂଯୋଗେ ପତ୍ନୀ ଦେଲାତାର ପ୍ରାଣ ।
ସ୍ୱରୂପ କହିବି ମୋର ନିଜବାସେ ଯିବି
ଏଥିନିମନ୍ତେ ପତ୍ନୀକୁ ନିଷ୍ଟେ ଦଣ୍ଡ ଦେବି ।

ପାଣ୍ଡୋଇ ଉତ୍ତରୁ ନାଗ ହୋଇଲା ବାହାର
ନାଗରୂପ ଦେଖି ରାଜା ହେଲା ଚମତ୍କାର ।
କାହୁଁ ଏ ଆଇଲା କାଳ କେମନ୍ତେ ଏ ରୀତି
ରାଜାଙ୍କୁ ଭୀତ ଦେଖିଣ ନାଗ କରେ ଉକ୍ତି ।

ନାଗ ଉବାଚ

ଅହିବର ବୋଲେ ରାଜା ଭୟ ତୁ ନକର
ଯାହା ମୁଁ କହିବ ତାହା ମନେ ହେତୁକର ।
ଆସିଥିଲି ତୋତେ ମୁହିଁ କରିବାକୁ ନାଶ
ଦଇବେ ଅଛଇ ତୋର ଅନେକ ଆୟୁଷ ।
ଯାହା ବିଧି ବିଧାନରେ ହୋଇଛି ନିର୍ମାଣ
ସେ କଥାକୁ କିଏ ଅବା କରିବ ମେଣ୍ଟଣ ।
ତୋତେ ବା ବିନାଶ ମୁହିଁ କେମନ୍ତେ କରନ୍ତି
ଧର୍ମ ଦେବା ସହାୟ ଯାହାକୁ ଅଛନ୍ତି ।
ମୋର ପତ୍ନୀ ବଚନେ ମୁଁ ଏଥକୁ ଆଇଲି
ଯାହା ସେ ବୋଇଲା ମୋତେ ଏଥି ମୁଁ ଜାଲଣି
ସ୍ତ୍ରୀ ରାଜାନ୍ତ ଅବିଶ୍ୱାସୀ ଛନ୍ତି ଶାପ ପାଇ
ତହିଁରେ ନାଗୁଣୀ ସେହୁ ବିଶ୍ୱାସ ନ ଯାଇ ।
ସେକାଳରେ ଶ୍ରୀନିବାସ ଅବତାର ହରି
ଯାହା ଭିଆଇଲେ ସେହୁ ଯୁଗମାନ ଧରି ।
ଅନୁକୂଳେ ଛୁଙ୍କନ୍ତେଣ ନାହିଁ ଅନୁକୂଳ
ଆତ୍ମା ବିନଷ୍ଟ ହୁଅଇ କର୍ମହିଁ ବିଫଳ ।
ଶ୍ରୀମୁଖେ କହିଅଛନ୍ତି ଦେବ ନାରାୟଣ
ଏକାମ୍ର ବନେ ବସାଇ ସର୍ବ ଦେବଗଣ ।
କଲ୍ପଶାରୁ କାଳ ଆମ୍ଭେ ଅଛୁଁ ଜାତ ହୋଇ
ଦୋଷ ନ ଦେଖିଲେ ଦଣ୍ଡ ଆମ୍ଭର ନଥାଇ ।
ଭାଗବତ ଶ୍ରୋତା ବକ୍ତା ଶୁକ ପରୀକ୍ଷିତ
ଅଭିଶାପେ ହୋଇ ପରୀକ୍ଷିତେ ଦନ୍ତାଘାତ ।
ସର୍ପ ଯଜ୍ଞ କରାଇଲେ ତାହାଙ୍କ କୁମର
ତାଙ୍କର ଭୟେ ଆମ୍ଭର ବାସ ବିରବର ।
ସେହୁ ସର୍ପ ନେଇ ଯଜ୍ଞକୁଣ୍ଡେ ପକାଇଲେ
ଯାନ୍ତେ ସେ ପଡ଼ିଲେ ଭେଟ ତାଙ୍କୁ ଯେଣିକଲେ
କୋପଶାନ୍ତ ନ ହେବାରୁ କୁଣ୍ଡେ ପକାଇଲେ
ତାହାଙ୍କ ନାମ ଧରିଣ ଆହୁତି ଦେଲେ ।
ଆସ୍ତିକ ମର୍ମଦା ପୁଣି ଗରୁଡ଼ ଗାରୁଡ଼ି
ପଦ୍ମନାଭ ସ୍ମରନ୍ତେ ଦ୍ରମାନ ଛଡ଼ି ।

ଏଥିଅନ୍ତରେ ମିଳିଲେ ବିଦେହ ରାଜନ
ତାହାଙ୍କ ସଙ୍ଗେ ଅଛନ୍ତି କାଳକୂଟ ପୁଣ ।
ବେନିଗୋଟି ସହୋଦର ନାମ କାଳକୂଟ
ସ୍ମୃତି ଅନୁସାରେ ବେନି ଜ୍ୟେଷ୍ଠ ସେ କନିଷ୍ଠ ।
ବେନିଜଣ ଆମ୍ଭ ମୁଖେ ହୋଇଲେ ସେ ହତ
ଅଦୋଷୀ ଦଂଶନେ ଦୋଷଦ୍ୟନ୍ତି କାଳନାଥ ।
ଏହା କହି ନାଗରାଜ ନିଜାଶ୍ରମେ ଯାଇ
ଜୈମିନିଙ୍କି ବ୍ୟାସଦେବ କହିଲେ ବୁଝାଇ ।
ଗଙ୍ଗାଧର ପାଣି କଲେ ପ୍ରାକୃତେ ଲେଖନ
ନିତ୍ୟ ପ୍ରବନ୍ଧ ବାରତା ଭବିଷ୍ୟ ପୁରାଣ ।

ଇତି ଶ୍ରୀଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ସିଧ ସମ୍ବତ୍ସର ବନେ
ନାମ ଚତୁର୍ଥୋଽଧ୍ୟାୟ

—*—

## ପଞ୍ଚମ ଅଧ୍ୟାୟ

## ବାନର ବଂଶର ଜନ୍ମର ବିବରଣ

ଜୈମିନିରୁବାଚ

ବ୍ୟାସଙ୍କ ପାଦ ଧରିଣ ପୁଚ୍ଛନ୍ତି ଜୈମିନି
ନିର୍ଘଣ୍ଟ ବିହିତ ବାକ୍ୟ କହ ମହାମୁନି ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
ନିର୍ଘଣ୍ଟ ବିହିତ ବାକ୍ୟ କହିବା ଆବର ।
ଦୁର୍ବାସା ଋଷି ଗଙ୍ଗାକୁ ସ୍ନାନ କରି ଗଲେ
ତ୍ରୀପଥ ତ୍ରିବେଣୀ ଘାଟେ ପ୍ରବେଶ ହୋଇଲେ ।
ଯୋଗେ ସ୍ନାହାନ ସେ କଲେ ତହିଁ ଏତେବାର
ହୃଦୟ ମଧ୍ୟେ ସ୍ମରିଣ ତ୍ରିପଥ ଈଶ୍ୱର ।
ମୋର ପତ୍ନୀ କୋଳେ ଜାତ କୁମାର କୁମାରୀ
ଜାତ ପଞ୍ଚମ ବରଷେ ହୋନ୍ତି ବନବାସୀ ।
କୋଳେ କୁମାର କୁମାରୀ ନାହିଁପେ ମୋହର
ଅର୍ଘ୍ୟ ଦେଇଣ ବିଗୁର କରେ ହୃଦପୁର ।
ସ୍ନାନ ସାରି ଋଷିବର ବେଗେ ଚଳିଗଲେ
ସେଦିନ ଋଷିର ପତ୍ନୀ ଗର୍ଭବତୀ ହେଲେ ।

ଗର୍ଭକାଳ ପୂର୍ଣ୍ଣ ହେଲେ ସମ୍ଭୂତ କୁମାରୀ
ପାଞ୍ଚ ବରଷର ଅନ୍ତେ ହୋଇ ବନବାସୀ ।
ନନ୍ଦନ ପର୍ବତେ ଯାଇଁ ଯୋଗ ଆରମ୍ଭିଲେ
ସନ୍ଦୋଦର ଋଷି ତାହା ନୟନେ ଦେଖିଲେ ।
ବୋଇଲେ କୁମାରୀ ତୁମ୍ଭ କାହିଁର ତପସ୍ୱୀ
ମୋର ଆଗେ ବର୍ତ୍ତମାନ ମିଳିଲୁ ତୁ ଆସି ।
ନନ୍ଦନ ପର୍ବତେ ମୁହିଁ ବସିଣ ଅଛଇ
କରିବାକୁ ଘୋର ତପ ମନ୍ତ୍ର ନ ଜାଣଇଁ ।
ତୁମ୍ଭେ ମୋର ଗୁରୁ ହୋଇ ଦିଅ ଉପଦେଶ
ମୋର ଗୁରୁ ଶ୍ରେଷ୍ଠ ତୁମ୍ଭେ ମୁଁ ତୁମ୍ଭର ଶିଷ୍ୟ
ସନ୍ଦୋଦର ମୁନି ତହୁଁ ଉପଦେଶ ଦେଲେ
ଉପଦେଶ ବେଳେ ତାର ନାମ ପୁଚ୍ଛାକଲେ ।
ଶୁଣିଣ କୁମାରୀ ତହୁଁ ବୋଲଇ ଉକତ
ଜନ୍ମକାଳେ ନାମ ପ୍ରମଞ୍ଜନା ଦେଲେ ମାତ ।
ଉପଦେଶ ଦେଇ ସନ୍ଦୋଦର ମୁନିବର
ସେଠାବରୁ ବିଜେକଲେ ସୁରେନ୍ଦ୍ର କନ୍ଦର ।
ଏମନ୍ତେଣ ପ୍ରବଞ୍ଜନା ପଦ ଅର୍ଘ୍ୟ ସିଲେ
ଦଇବ ବଳରେ ସେହୁ ମନେ ଗର୍ବ କଲେ ।
ଏମନ୍ତ ସେ ତପ କରୁଥିଲେ ନିତ୍ୟପୁରେ
ଭାର୍ଗବ ମହର୍ଷି ଦିନେ ଗୋଦାବରୀ ତୀରେ ।
ନୟନେ ଦେଖିଲେ ତହିଁ ଅପୂର୍ବ ବିଧାନ
କ୍ରୀଡ଼ା କଉତୁକ ମତ୍ତ ହରିଣୀ ହରିଣ ।
ମୃଗୁଣୀ ସଙ୍ଗତରେ ମୃଗ କରେ ରସ ଲୀଳା
ଦେଖିଣ ଭାର୍ଗବ ମନେ ବିକାର ଜନ୍ମିଲା ।
ତତକ୍ଷଣେ ବ୍ରହ୍ମବିନ୍ଦୁ ହୋଇଲା ବାହାର
ବାମକରରେ ବୀଜକୁ ତୋଳି ଋଷିବର ।
ଚଉକତି ଫେରାଇଣ ଚାହିଁ ବନ ଘନେ
ବେନି ଶ୍ରେଣୀ ବନ୍ଧ ବୃକ୍ଷ ଦେଖିଲେ ନୟନେ ।
ହକାରନ୍ତେ ଋଷିବର ନୟନ ଠାରିଣ
ବେନି ପକ୍ଷୀ ତାଙ୍କ ପାଶେ ମିଳିଲେ ବହନ ।
ପଦଦନା କରି ଋଷି ତାଙ୍କ ହସ୍ତେ ଦେଲେ
କାମେଶ୍ୱର ଅରଣ୍ୟକୁ ଯିବାକୁ ବୋଇଲେ ।
ବୃଦ୍ଧକ ନେଇଣ ଦେବ ଏ ବୀଜ ବହନ
ଗର୍ଭକୁ କ୍ଷେପନ୍ତେ ଜାତ ହୋଇବ ନନ୍ଦନ ।
ଏହା ଶୁଣି ବେନି ପକ୍ଷୀ ବୀଜ ଘେନି ଗଲେ
ଯାଆନ୍ତେ ଆରେକ ପକ୍ଷୀ ତାହାଙ୍କୁ ଦେଖିଲେ ।
ନନ୍ଦନ ପର୍ବତ ପରେ ଆକାଶ ମାର୍ଗରେ
ପ୍ରମଞ୍ଜନା କରୁଥାଇ ତପ ସେ ବନରେ ।
ହାଇ ଆସୁଁ ପ୍ରମଞ୍ଜନା ମୁଖ ବିସ୍ତାରିଲା
ପକ୍ଷୀଅଣ୍ଟ ଘାତେ ବୀଜ ତା ମୁଖେ ପଡ଼ିଲା ।
କଣ୍ଠଦ୍ୱାରେ ବୀଜ ଯାଇ ହୃଦପଦ୍ମ ଜାଣି
ନାଭିପଦ୍ମେ ବାସ କରି ଜନ୍ମ ତତକ୍ଷଣି ।
ଦେଖିଣ ସେ ପ୍ରମଞ୍ଜନା ହୋଇଲା ତରସ୍ତ
ନ ଜାଣଇ ସୁରତ ମୁଁ ନାହିଁ ମୋ ଗିରସ୍ତ ।
ଜପ କରେ ନିଗମରେ ରଖାଇ ଶରୀର
ଅମୋକ୍ଷ କଲଇଁ ଆତ୍ମା ମୋର କଳେବର ।
ଆକାଶ ମାର୍ଗରେ ଆସି ନାରଦ ମିଳିଲେ
ଦେଖିକରି ପ୍ରମଞ୍ଜନା ମାନ୍ୟଧର୍ମ କଲେ ।
ଆସନେ ବସାଇ ତାଙ୍କୁ ବୋଲନ୍ତି ବଚନ
କେଣେ ବିଜେ କରିଥିଲ ବ୍ରହ୍ମାଙ୍କ ନନ୍ଦନ ।
ନାରଦ ବୋଇଲେ ତାଙ୍କୁ ପୂର୍ବର ବିଧାନ
ହିମାଳୟଗିରିରୁ ମୁଁ ଆସେ ଏ ପଥେଣ ।
ପୂର୍ବେ ପିତା ଦିନକରେ କୋଳରେ ବସାଇ
ଭବିଷ୍ୟ କହିଲେ ମୋତେ କଷ୍ଟହିଁ ବୁଝାଇ ।
ତ୍ରେତାଯୁଗେ ରାମ ସୈନ୍ୟ ଅପାରୁ ଅପାର
ଅକଳନ୍ତ ସୈନ୍ୟ ଜାତ ହେବ ଭୟଙ୍କର ।
ଏହିଭାବେ ପିତା ମୋତେ କହିଲେ ଅନେକ
କାଳମୁଖା ଦଧିଞ୍ଜନ ପ୍ରମଞ୍ଜନା ସୁତ ।
ଭାର୍ଗବ ଋଷିଙ୍କ ବଂଶ ବାନରେ ବୋଲନ୍ତି
ଈଶ୍ୱରଙ୍କ ବୀଜେ ଜାତ ପବନ ସନ୍ତତି ।
ଆଗୋ ପ୍ରମଞ୍ଜନା ଦେବ ଅକର୍ମ ତୁ କଲୁ
ତପ ଆଚରିଣ ମନେ ଗରବ ବହିଲୁ ।
ହସ୍ତମୁଠା ନ ଦେଇ ସେ ଉତ୍ସର୍ଗନ୍ତି ହାଇ
ପୂର୍ବର ବିଧାନମାନ ନିଷ୍ଫଳ ଫଳଇ ।
ନାରଦ ବଚନେ ଶାନ୍ତ ପ୍ରମଞ୍ଜନା ହେଲେ
ଘୋରବନେ ଯାଅବୋଲି ପୁତ୍ରକୁ ବୋଇଲେ ।
ଆଜ୍ଞା ପାଇ କାଳମୁଖ ଚଳିଲେ ବହନ
ମନୋଯାନେ ଗଲେ ତହୁଁ ବ୍ରହ୍ମାଙ୍କ ନନ୍ଦନ ।
ବ୍ୟାସ ମହର୍ଷି କହିଲେ ଜୈମିନି ଆଗରେ
ଗଙ୍ଗାଧର ତାହା ଭାଷେ ପ୍ରାକୃତ ଭାଷାରେ ।
ଇତିଶ୍ରୀ ଭବିଷ୍ୟପୁରାଣେ ଜୈମିନି ସମ୍ବାଦେ
ସିଦ୍ଧସମ୍ପ୍ରଦାୟରେ ବନେ ନାମ ପଞ୍ଚମୋଧ୍ୟାୟ ।

# ଷଷ୍ଠ ଅଧ୍ୟାୟ



## ଶ୍ରୀକୃଷ୍ଣଙ୍କ ବସନ୍ତମଞ୍ଜରୀ ରାସକ୍ରୀଡ଼ା

ଜୈମିନିରୁବାଚ

ଜୈମିନି ବୋଲନ୍ତି ବ୍ୟାସଦେବ ପାଦଧରି
ଆବର କଥାଏ ମୋତେ କହ ତପସ୍ୱୀ ।
ଦ୍ୱାପରେ ବସନ୍ତ ରାଜ ମଞ୍ଜରୀ ବିଳାସ
ସୁରେଖ ସେ ଯୁଗନାମେ କେଳି ପୀତବାସ ।
କେମନ୍ତ କରଣ କେଳି କଲେ ମର୍ତ୍ତ୍ୟପୁରେ
କହିଲେ ସନ୍ତୋଷ ମୋର ଜନ୍ମିବ ମନରେ ।

ବ୍ୟାସ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
ବସନ୍ତ ମଞ୍ଜରୀ ରାସ ଅତ୍ୟନ୍ତ ଗମ୍ଭୀର
ସୁରେଖ ଯୁଗରେ ସେହି ଦେବକୀନନ୍ଦନ
ମଥୁରା ନାଗରୀମାନ ମୋହି ଜନାର୍ଦ୍ଦନ ।
ରାଜସୂୟ ଦ୍ୱିଜବଂଶେ ଜନମ ଲଭିଲେ
ବୃନ୍ଦାବନ ବସି ଗୋପୀ ତପ ଆଚରିଲେ ।
ଏହା କହିଣ ଗୋବିନ୍ଦ ବିଚାରିଲେ ମନେ
ସଧୀରେ ବିଜୟ କଲେ ପୁଳିନର ବନେ ।
ମୋହର ଭକତଭାବେ ବୃନ୍ଦାର ଉତ୍ପତ୍ତି
ଷୋଳସହସ୍ର କନ୍ୟା ମୋର ରମଣ ଇଚ୍ଛନ୍ତି ।
ମାୟାରେ ରମିବି ଧରି ମାୟା କଳେବର
ହୃଦପଦ୍ମେ ବିଚାରିଲେ ଜଗତ ସୋଦର ।

କେଳିର ରମ୍ୟଭୂମିରେ କଦମ୍ବ ଉପରେ ।
ବଂଶୀ ଘେନିଣ ଶ୍ରୀକୃଷ୍ଣ ବୋଇଲେ ସଧୀରେ
ବଂଶୀର ଧ୍ୱନି ଶୁଣିଣ ପାଷାଣ ତରଳ
ତୃଣ କଳେ ରଖି ଧେନୁ ନ କଲେ କବଳ ।
ଧ୍ୱନି ଶୁଣି ଶୁଷ୍କ ବୃକ୍ଷ ପଲ୍ଲବିତ ହେଲେ
କାଳନ୍ଦୀ ଉଜାଣି ବହି ଶବଦ ଶୁଣିଲେ ।
ଜଳଜନ୍ତୁମାନେ ସବେ ସ୍ଥଳରେ ଉଠିଲେ
କୋକିଳ ମଉନ ହୋଇ ଶ୍ରବଣ ଡେରିଲେ ।
ପବନ ଦେବତା ଶୁଣି ନିସ୍ତବ୍ଧ ହୋଇଲେ
ଆକାଶ ମାର୍ଗରେ ବିଧୁ ନିଶ୍ଚଳେ ରହିଲେ ।
ଯୋଗିମାନେ ଯୋଗଧ୍ୟାନ କଲେ ଉପେକ୍ଷଣ
ଧିରେ ଧିରେ ବହମାନ ମଳୟ ପବନ ।
ସ୍ୱଭାବେ ହୋଇ ଅଛଇ ଶରଦର କାଳ
ସୁଗନ୍ଧ ଘେନି ପବନ ବହେ ପରିମଳ ।
ସୁନୀଳ ଗଗନେ ଶୋଭେ ଉଦେ ହୋଇଶଶୀ
ନିର୍ଜନେ ବିରାଜମାନ କରିଅଛି ନିଶି ।
ଜଳେ ସ୍ଥଳେ ପୁଷ୍ପମାନ ବିକଶିତ ହୋଇ
ସୁଗନ୍ଧ ଶୀତଳ ଘେନି ମରୁତ ବହଇ ।
ଅଞ୍ଜନ ରଞ୍ଜନ କରି ନେତ୍ର-କମଳରେ
ମାୟାପଟଳମାନ ସେ ପ୍ରକାଶ କରିଲେ ।
ଅନୁକ୍ଷରେ ବୋଲାଇଲେ ତହୁଁ ବ୍ରହ୍ମନିଶି
ସହସ୍ରେ ଯୁଗ ଅନ୍ତରେ ଏହୁ ଦିନ ଘୋଷି ।
ତ୍ରିଭଙ୍ଗି ଛନ୍ଦରେ ଶ୍ୟାମ ବୃକ୍ଷେ ଉଭାହୋଇ
ମୋହନ ମୁରଲୀ ଗୋଟି ଅଧରେ ଲଗାଇ ।
ଷୋଳସହସ୍ର ଗୋପିଙ୍କର ନାମ ସେହୁ ଧରି
ସୁସ୍ୱରେ ମୁରଲୀ ନାଦେ ଡାକ ଅନୁସରି ।
ଅକାରେ କରିଣ ଧ୍ୱନି ମକାରେ ଡାକିଲା
ସକଳ ତରୁଣୀ ଶ୍ରୁତି ମାର୍ଗରେ କହିଲା ।
କର୍ଣ୍ଣରେ ଶୁଣିଲେ ଧ୍ୱନି ଡାକେ ନାମ ଧରି
ଛନଛନ ମନ କଲେ ଗୃହବନ୍ଦ ଗୁଡ଼ି ।
ମଦନେ କମ୍ପଇ ଦେହ ନ ଚଳେ ଚରଣ
ନାଦରେ ମୋହିଲେ କୃଷ୍ଣ ସବୁଙ୍କର ମନ ।
ଏକକୁ ଆରେକ ଗୋପୀ ଦେହ ଲୁଚ୍ଚ ଦେଇ
ଧାଇଁଲେ ସେ ଅତିବେଗେ ଅସମ୍ଭାଳ ହୋଇ
ବିଚାର କରଇ କେହୁ ମନେ ମନେ ଗୁଣି
ନ ପୁଣ ଅଗ୍ରେ ଯାଇଣ ହୋଇ ସପତଣୀ ।
ବେଗୁ ବେଗେ ଯାଇଣ କେ ମିଳି ବୃନ୍ଦାବନ
ଆମ୍ଭ ସୁଖରେ ରମିବ ନନ୍ଦର ନନ୍ଦନ ।
ଦେଖିବାଇଁ ନେତ୍ର ସୁଖେ ନୟନ ପୂରାଇ
ଚଳ ବୋଲଇ ମୋର ନାମେ ବେଣୁଅଛି ବାଇ
କପାଳେଁ କଦମ୍ବ ମୂଳେ ଡାକେ ରାତ୍ରକାଳେ
ମଦନ ତପଭଙ୍ଗିରେ ଗଲେ ଏକାବେଳେ ।
ବିଚାର କରନ୍ତି ଇନ୍ଦ୍ର ଗନ୍ଧର୍ବ ଧାସ୍ତି
ଶିଖିଲେ ଆମ୍ଭଙ୍କୁ ସେ ଯାହା ଥିଲେକହି ।
ସର୍ବଗୋପୀ ମନୋରମ ଦେବ ଶିରୋମଣି
ସେ କଥା ମନରେ ଭାବ କଲେ ବେଣୁଧ୍ୱନି ।
ପୁଲିନ ବନରେ ଅବା କରିବେ ରାସ
ଏହାଭାବି ନାରୀଯୂଥ ହୃଦେ କଲେ ଆଶ ।
ଏହାକହି ଗୋପିମାନେ ଉଦବନ୍ଧ ହୋଇ
ଏକକୁ ଆରେକ ଲୁଚି ଯାଆନ୍ତି ପଳାଇ ।
ଗୋଡ଼ାବନ୍ତି ପତି ପୁତ୍ର ଇଷ୍ଟ ବନ୍ଧୁଜନ
ଖୁଣ୍ଟୁଛା ମଉଳା ଭାଇ ଭଉଣୀ ସୁଜନ ।
ଆଗରେ ଯାଇଣ ତହୁଁ ଓଗାଳନ୍ତି ପଥ
ନ ଯାଅ ଗୋ ତୁମ୍ଭେମାନେନୋହେ ଏ ଉଚିତ
ରଜନୀ କାଳରେ ତୁମ୍ଭେ କମ୍ପା ଯାଅ ବନ
ଲଜ୍ଜାହୀନ ହୋଇଲା କି ତୁମ୍ଭର ବଦନ ।
ଯା ଦେଖି ଉତ୍ତର ଦ୍ୟନ୍ତି ସେ ସକଳ ନାରୀ
ବନେବଜେ କରୁଛନ୍ତି ଦେବ ନରହରି ।
କର୍ଣ୍ଣ ଡେରି ଶୁଣ ଶୁଭୁଅଛି ବେଣୁନାଦ
ଆମ୍ଭର ହୃଦ ମଞ୍ଚିଣ ଜନ୍ମାଏ ଆନନ୍ଦ ।
କ୍ଷଣ ମାତ୍ରକ ଶୁଣିଣ ଆସିବୁଁ ଏକ୍ଷଣି
ସର୍ବବନ୍ଧ ନାଶନ ଦେବ ଚକ୍ରପାଣୀ ।
ସକଳ ବରଜନାରୀ ଗଲେ ଏକାବେଳେ
ପୁଲିନ ବନେ ମିଳିଲେ କଦମ୍ବର ତଳେ ।
ଷୋଳସହସ୍ର ଗୋପୀ ମିଳି ଦେଖି ବନମାଳୀ
ହୃଦପଦ୍ମରେ ଶୋଭିତ କୁସୁମର ମାଳ ।
ଗୁଞ୍ଜମାଳ ସୁଶୋଭିତ ଦିଶେ ଜାନୁ ମୂଳେ
ଶ୍ରବଣ ସୁନ୍ଦର ଦିଶେ ମକର କୁଣ୍ଡଳେ ।
ନୂପୁର କଙ୍କଣମାନ ଦୁରନ୍ତ ବିରାଜେ
ରତନ ମେଖଳାମାନ କଟୀମଧ୍ୟେ ସାଜେ ।
କଟୀରେ ପୀତବସନସୁରଙ୍ଗ ଅଧର
କୋଟିଏ କନ୍ଦର୍ପ ମୂର୍ତ୍ତି ଦେଖିଲେ ନେତ୍ରର ।

ଯୌବନ ପାଇଣ ଗୋପୀ ହରଷିତ ମନ
କୃଷ୍ଣଙ୍କୁ ବେଢ଼ିଲେ ଯେସନେ ଚନ୍ଦ୍ରେ ତାରାଗଣ
ମାୟାଧର ଏ ରୂପ ଯେ ମାୟା ଭିଆଇଲେ
ତହିଁ ଗୋପୀ ବନେ ପଶି କୁସୁମ ତୋଳିଲେ ।
ମାଧବୀ ମାଳତୀ ମଲ୍ଲୀ ଜାଇ ଯୂଥିମାନ
ଚମ୍ପକ କୁନ୍ଦ କେଶୋର ମନ୍ଦାର କୁସୁମ ।
ସ୍ତବକ କୁସୁମ ତ୍ରୁଟିଅନା ଯେ ଅଶୋକ
ନାଗାନ୍ତ କେୟୂରମାନ ପୁଣି କୁରୁବକ ।
ଏକମନ ଦେଇ ମାଳା ଗୁନ୍ଥି ଯତ୍ନକରି
ଯମୁନା ବାଲି କୂଦରେ ବସି ନରହରି ।
ଏଥୁ ଅନ୍ତରେ ଚିତ୍ତ ମନଦେଇ ଶୁଣ
ମାୟାପଟଳ ପେଲିଲେ ଦେବକୀନନ୍ଦନ
ଗୋପୀ ଗୋଟିକେ ଶ୍ରୀକୃଷ୍ଣ ଗୋଟିଏ ହୋଇଲେ
ଷୋଳସହସ୍ର ଗୋପିଙ୍କୁ କୃଷ୍ଣ ସେତେ ହେଲେ।
ରତିରଙ୍ଗରେ ତୋଷିଲେ ତାଙ୍କୁ ନରହରି
ଇଚ୍ଛା ଅନୁସାରେ ରତିସୁଖ ପୂର୍ଣ୍ଣକରି ।
ତାଙ୍କର ଭକତି ଦେଖି ଉପଦେଶ ଦେଇ
ବ୍ରହ୍ମଦର୍ଶୀ ଉପାଖ୍ୟାନେ ତାହାଙ୍କୁ ବୁଝାଇ ।
ଏକାତ୍ମା ଭାବରେ ତାଙ୍କୁ ବ୍ରତେକ କରାଇ
କୁମ୍ଭ ପୂର୍ଣ୍ଣିମାର ଦିନେ ଶୁଦ୍ଧମନ୍ତ ହୋଇ ।
ରହିବ କାରଣ ମୋର ଯୁଗ ଯୁଗାନ୍ତର
ଏକମନ ହୋଇ ଶୁଣ ବିଧାନ ବ୍ରତର ।
ପ୍ରସ୍ତୁତ କରି ଶକଟେ ନାନା ଦ୍ରବ୍ୟ ଭରି
ଗୋପରୁ ବାହାର ହେବେ ସର୍ବ ନର ନାରୀ ।
ପୁଲିନ ବନରେ ମିଳି କାଳନ୍ଦୀର କୂଳେ
ନିର୍ମଳ ମୁକ୍ତିର ସ୍ନାନ କାଳନ୍ଦୀର ଜଳେ ।
ସମସ୍ତେ ମିଳିଣ ତହିଁ ନିତ୍ୟକର୍ମ ସାରି
ବାଲୁକାରେ କରିଣ ସେ ପୂଜି ହରଗୌରୀ ।
ବିବିଧ ମତରେ ଯେନି ନାନା ଉପହାର
ଶୀତଳ ଦେଇ ତୋଷିବ ଭବାନୀ ଶଙ୍କର ।
ଘଟ ଗୋଟି ବୁଡ଼ାଇବ ମଙ୍ଗଳ ବିଗ୍ରହ
ଶ୍ରୀମଧୁସୂଦନ ବୋଲି ହୃଦପଦ୍ମେ ସ୍ମରି ।
ଗୋରୁ ଯେ କାଞ୍ଚନ ଆଦି ଦେଇ ମିଷ୍ଟଅନ୍ନ
ଭବାନୀ ଶଙ୍କର ସେବି ତହିଁ ଦେବ ଦାନ ।
ଚିରଜୀବୀ ବର ପାଇଁ ବାଞ୍ଛା ହେବ ପୂର୍ଣ୍ଣ ।
ବ୍ରତ ବୁଝାଇଣ ଗୋପୀ ଗଲେ ନିଜସ୍ଥାନ ।
ବୃନ୍ଦାବାସ ଆବୋରିଣ ସକଳେ ରହିଲେ।
ମନ୍ଦିରରେ ବୃଷଭାନୁ ସୁତା ବିସ୍ମରିଲେ ।
ଯୁଗ ଶେଷ ହେଲ ପ୍ରଭୁ ଯିବେ ନିକେତନ
ବହି ଅଦ୍ଧାଙ୍ଗିନୀ ମୁହିଁ ଅଟେ ହୀନଜନ ।
ପ୍ରୀତି ମାରି ବନ୍ଧା ନେଲାବେଳେ ଥିଲେ କହି
କଳନ୍ତରେ ଯୁବା ବପୁସକୁ ବନ୍ଧା ଦେଇ ।
ସନ୍ତୋଷିଣୀ ଦେବା ପାଇଁ କହିଥିଲେ ମୋତେ
ପୂର୍ଣ୍ଣରାସ କରି ଗଲେ ମର୍ତ୍ତ୍ୟ ଭୂମି ଗତେ ।
ଏହା କହିଣ ଶ୍ରୀମତୀ ଅତି ଶୋକାତୁର
ପୁଲିନ ବନରେ ରାସ କଲେ ଦାମୋଦର ।
ବଂଶୀକରେ ଧରି ପ୍ରଭୁ ଲଗାଇ ଅଧରେ
ଷୋଳସହସ୍ର ଗୋପୀ ନାମ ଧରିଣ ଡାକିଲେ ।
ମୋତେ ନ ଡାକିଲେ ବଂଶୀ ଅର୍ଦ୍ଧାଙ୍ଗିନୀ ବୋଲି
ବଢ଼ଇ ନିଷ୍ଠୁର ସେହୁ ନାମ ନ ଉଚ୍ଚାରି ।
ଶୋକଭରେ ରାଧିକା ଯେ କରନ୍ତି ଶୟନ
ବ୍ୟାସ ମହର୍ଷି କହିଲେ ଜୈମିନି ଆଗେଣ ।
ଭବିଷ୍ୟପୁରାଣ କଲି ପ୍ରାକୃତେ ଲେଖନ
ଗଙ୍ଗାଧର ପାଣିକୁ ହେ ରଖ ନାରାୟଣ ।
ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ

—*—

## ଅଷ୍ଟମ ଅଧ୍ୟାୟ

### ମାନ୍ୟାନ୍ତରେ ଶ୍ରୀକୃଷ୍ଣର ଯଶୋଦା କୋଳରେ ଅଚେତନା ବସ୍ଥାରେ ଶୟନଯୋଗେ ଗୋପିମାନଙ୍କର ଶୋକ ଏବଂ ନୈବେଦ୍ୟରୂପେ ଶ୍ରୀକୃଷ୍ଣର ପ୍ରବେଶ

ଜୈମିନିରୁବାଚ
ଜୈମିନି ବୋଲନ୍ତି ବ୍ୟାସଙ୍କର ପାଦ ଧରି
ଏଥୁଅନ୍ତେ କବାକୃତ୍ୟ କଲେ ନରହରି ।

ଏଥିର ଚରିତ ମୋତେ କହ ମହାମୁନି
ତବ ମୁଖରୁ ଶୁଣିବି ଅପୂର୍ବ କାହାଣୀ ।

ବ୍ୟାସଦେବ ଉବାଚ

ବ୍ୟାସମହର୍ଷି ବୋଲନ୍ତି ଶୁଣ ଜଇମିନି
ରାଧିକା କଳଙ୍କ ନାଶ କଲେ ଚକ୍ରପାଣି ।
ବୃଷଭାନୁ ସୁତା ଶୋକ କଲେକ ମନରେ
ଅନ୍ୟଜାଣିବେ କାନ୍ଦନ୍ତିଦୁଃଖେ ଧୀରେ ଧୀରେ ।
ଅଛ ଆଗୁରେ ବୋଲନ୍ତି ଯା କରିବେ ଶ୍ୟାମ
ତାଙ୍କ ପ୍ରୀତି କଳଙ୍କରେ କଳଙ୍କି ମୋ ନାମ ।
କଳଙ୍କିନୀ ହେଲି ବୋଲି ମନେ ଭୟ ନାହିଁ
ଅପଯଶ କର୍ମମାନ ଯୁଗେ ଯୁଗେ ଥାଇ ।
ତୁମ୍ଭପାଇଁ କଳଙ୍କ ମୁଁ ଅଙ୍ଗରେ ବହିଲି
ବନ୍ଧୁକାକୁ ପୂର୍ଣ୍ଣ କରି ଏମାନ ସହିଲି ।
ଶ୍ରୀମନ୍ତ ବଳସ୍ୱେ ପ୍ରଭୁ ନିଜବାସେ ଗଲେ
ଯଶୋଦା କୋଳରେ ଯାଇଁ କ୍ଷୀର ପାନକଲେ
କ୍ଷୀରପାନ କରି କୃଷ୍ଣ ବୋଲନ୍ତି ବଚନ
ଦୁର୍ଯୋଗେ ବିପାକ ଆଜ ପୂର୍ଣ୍ଣିମାର ଜହ୍ନ ।
ଆଜ ଚନ୍ଦ୍ର ନଦେଖିବ ଘରେ ଥିବ ପଶି
ଚନ୍ଦ୍ରମା ବଦନେ ବଡ଼ ଦୁର୍ଯୋଗ ଗରାସି ।
ଆଜ ଚନ୍ଦ୍ର ଦର୍ଶନରେ ବଡ଼ ଅପରାଧ
କଳଙ୍କ ସଂଯୋଗ ହିନେ ଘଟିବ ପ୍ରମାଦ ।
କୃଷ୍ଣର ବଚନେ ସର୍ବେ ଗୃହେ ଥିଲେ ରହି
ଅଧାସ୍ୱର୍ଗେ ଧ୍ୱନିଶୁଭେ ଶୁଣ ଗୋପ ଗୋଷ୍ଠୀ ।
ଗୋପ ଯେ ମଥୁରା କାଶୀ ନରନାରୀଜନ
ସ୍ୱର୍ଗରେ ହିହିତ ବାଣୀ ଏକମନେ ଶୁଣ ।
ଅକସ୍ମାତରେ ଦୁର୍ଯୋଗ ଘଟେ ଗୋପପୁର
ମାର୍ଗଶିର ଶୁକ୍ଳପକ୍ଷ ପୂର୍ଣ୍ଣିମା ଦିନର ।
ସ୍ୱର୍ଗର ଶବଦେ ଗୋଷ୍ଠ ହୋଇଲେ ଅସ୍ଥିର
ଯଶୋଦାକୋଳରେ ବିଜେକଲେ ଦାମୋଦର
କୋଳେ ବସି କ୍ଷୀରଖାନ୍ତେ ମାତାଚୁମ୍ବ ଦେଲେ
ମୂର୍ଚ୍ଛିତହୋଇଣ କୃଷ୍ଣଭୂମିରେ ପଡ଼ିଲେ ।
ଚକ୍ଷୁରୁ ଧାର ବହିଲା ହୋଇଲେ ଅଚେତ
ଦେଖି ବ୍ରଜ ଗୋଷ୍ଠମାନେ ଏକା ବିପରୀତ ।
କୃଷ୍ଣଙ୍କୁ ଅଚେତଦେଖି କରନ୍ତି ରୋଦନ
କାନେ କାନେ ଜାଣିଲେ ସେ ସର୍ବଦେଶଜନ ।

ସର୍ବେ ଏକ [redacted] ଗୁଡ଼ିଲେ
ଅଜଣା ବିପଦ କାହ୍ନୁଁ ଅଇଲା ଭାଳିଲେ ।
କି ଦୋଷରେ ଗୁଡ଼ିଗଲୁ ମୋହର ଏ କୋଳ
ବ୍ରଜପୁରେ ମହାଦୁଃଖେ ଶୁଭେ ମହାଗୋଳ ।
ଗୋପିମାନେ ଗୋପନରେ କଲେକ ପ୍ରଚାର
ଶ୍ରୀକୃଷ୍ଣ ମଲେ ବୋଲିଣ ଶୁଭିଲା ଚହଳ ।
ଲଳିତା ବୋଲଇ ଯଶୋଦାର ପ୍ରାଣଗଲା
ଆଜଠାରୁ ଗର୍ଭତାର ବିଫଳ ହୋଇଲା ।
ଅଳକା ମଞ୍ଜରୀ ଶୁଣି ରାଧିକା ଭଗିନୀ
ଲଳିତା ବିଶାଖା ଆଗେ ରାଧିକାଙ୍କୁ ଘେନି ।
ମୁଖେ ନଷ୍ଟୁରଇ ବାକ୍ୟ କରି ହାହାକାର
କହିବାର ନୋହେ ଅଲୌକିକ ସମାଚାର ।
ଶୁଣ ହିନୋହିନୀ ରାଈ ତୁମ୍ଭେ ଯେ ପୁଚ୍ଛିଲ
ସର୍ବେ ମେଳହୋଇ କୃଷ୍ଣପାଶେ ଯିବାଚାଲ ।
କହିଲା କହିଲା ବୋଲି ଗୋପିଗଣେ ବୋଲେ
ମୂର୍ଚ୍ଛିତହୋଇଲେ କୃଷ୍ଣ ଯଶୋଦାରକୋଳେ ।
ମଥୁରା ଗୋପଯୁବତୀମାନେ ଅଇଲେ ଯେ ଧାଇ
କାନ୍ଦିଲେ ଯୁବତୀମାନେ କୃଷ୍ଣମୁଖ ଚାହିଁ ।
ଜଟିଳା ଆସିଲେ ଦେଖି କନ୍ୟାସଙ୍ଗେ କରି
ଭଲମନ୍ଦ କେମନ୍ତେ ଯେ ହେଲେ ନରହରି ।
ଜଟିଳାର କନ୍ୟାବୋଲେ ମୋର ଭଲହେଲା
ଚୋରମୋର ଭଲ ହେଲା ରାଧାପ୍ରାଣ ଗଲା ।
ତୁମ୍ଭେଆମ୍ଭେ କି କରିବା ବିହିର ଲିଖନ
ନିଧନ ହେବାର ଆମ୍ଭେ ଶୁଣିଲୁ କର୍ଣ୍ଣେଣ ।
ଦେବକୀ ଯଶୋଦା ବେନି ଗୋପୀ ମୁଖଚାହିଁ
ଉଚ୍ଚସ୍ୱରେର ରୋଦନ କଲେ ହାହା ହୋଇ ।
ଯୁବତୀଏ ଦେଖିବାକୁ ସମସ୍ତେ ଅଇଲେ
ବେଳକୁ ବେଳ ରୋଦନ କଲେ ମହାରୋଳେ
ସର ଲବଣୀ ଯେଜନ ମାତା କୃଷ୍ଣେ ଡାକ
ଶୁଣି ବସୁଦେବ ନନ୍ଦ ଅଇଲେ ତତକ୍ଷଣ ।
ଉଠବୋଲି ତୋଳିଣ ସେ ଧରି ବେନିକର
ମୃତଶବ ପ୍ରାୟେ ହୋଇ ନ ରହେ କୋଳର ।
ଆଜଦିନ ବଂଶୀ ସ୍ୱନ କର୍ଣ୍ଣେ ନ ଶୁଣିଲୁଁ
ଏ ବୃଦ୍ଧବୟସେ କାହ୍ନୁ ଗୁରୁଶୋକ ଦେଲୁ ।
ଯମୁନା ପୁଳିନ ବନ ବଂଶୀ ବଟ ଆଦି
ସକଳଶୋଭିତ ନୋହେ ଅଛନ୍ତି ଆଚ୍ଛାଦି ।

ଶ୍ରୀଦାମ ସୁଦାମ ବେଣୁ କର ପୁଟେ ତୋଳି
ଅନେକ ହୋଇଲାଣି ବେଳ ଉଠ ବନମାଳି ।
ଗୋଧନ ଚରାଇଣ ଯିବା ଗୋବର୍ଦ୍ଧନ କନ୍ଥ
ଭାଇ ଭାଇ ବୋଲି ଘୁମେ ମୁଣ୍ଡକୋଡ଼ ହୋନ୍ତ
ସୁଦାମ କାତର ଶୁଣି ଦେବ ଚକ୍ରପାଣି
ଅନ୍ତରେ ଜାଣିଲି ପ୍ରଭୁ ଭକ୍ତର କାହାଣୀ ।
ବ୍ୟାସ ମହର୍ଷି କହିଲେ ଜୈମିନି ଆଗର
ଏଥିଅନ୍ତେ ଯଶୋମତୀ ଶୋକ ଗୁରୁତର ।
ବାରେ ମାତ୍ର ମୁଖ ଦେଖା ଅଲେଖ କୁମର
ତୋହର ବିହୁନେ ଦିଗ ଦିଶେ ଅନ୍ଧକାର ।
ତୋହର ବିହୁନେ ବାବୁ ମରିବଇଁ ମୁହିଁ
ଅଭାଗିନୀ ମାତାଲାଗି ବଧଭାଗୀ ହୋଇ ।
ଦାମ ସୁଦାମ ଡାକନ୍ତି ଗୋଚାରଣ ଅର୍ଥେ
ସର ଲବଣୀ ଦେବି ମୁଁ ବଳରାମ ହସ୍ତେ ।
ଏହା ଶୁଣି ବଳରାମ ମୂର୍ଚ୍ଛାଗତେ ପଡ଼ି
ପବନ ଆଘାତେ ରମ୍ଭା ଯେସନେ ଉପୁଡ଼ି ।
ଜଟିଳା ଭୟରେ ରାଧା କାନ୍ଦି ନ ପାରେ
ମୁଖରେ ନ ସ୍ଫୁରେ ବାକ୍ୟ ହୃଦୟ ବିଦାରେ ।
ରାଧା ବୋଲେ କଳଙ୍କକୁ ମୁହିଁ ଡରୁଥିଲି
ଏ କୁଳ ସେ କୁଳ ଦୁଇକୁଳ ବୁଡ଼ାଇଲି ।
କଳଙ୍କିନୀ ବୋଲି ମନେ ଭୟ ମୋର ନାହିଁ
ଦିନ ଦିନ କେଳିରସ ହୃଦୁଁ ଯିବନାହିଁ ।
ପ୍ରାଣନାଥ ଛାଡ଼ିଗଲେ ଗଳେ ପାଦଦେଇ
କୃଷ୍ଣସଙ୍ଗେ ମୋର ପ୍ରାଣଯାଅ ତୁ ଗୋଡ଼ାଇ ।
କୃଷ୍ଣ-ମୁଖ ଦେଖି ରାଧା କରନ୍ତି ରୋଦନ
ତାର ରୋଦନେ ବିସ୍ମୟ ହୋଇ ନାରାୟଣ
ଅବତୀର୍ଣ୍ଣ ହୋଇ ପ୍ରଭୁ ଦେବ ନାରାୟଣ
ବୈଦ୍ୟ-ରୂପ ଧରି ଉଭା ଯଶୋଦା ଆଗେଣ ।
ମାୟାରେଯୋଶୋଦାକୋଳେ ଶୋଇଛନ୍ତିସୁଖେ
ବଇଦ୍ୟରୂପ ଧରେଣ ଯଶୋଦାକୁ ଡାକେ ।
କହ ଯଶୋମତୀ କମ୍ପା କରୁଛ ରୋଦନ
ତୁମ୍ଭ ପୁତ୍ର ମୋର ମିତ୍ର ଅଛନ୍ତି ଶୋଇଣ ।
ରାଣୀ ବୋଲେ କଏ ବାବୁ ଚହ୍ନି ମୁଁ ନ ପାରି
ବୈଦ୍ୟବୋଲେ ଚହ୍ନମୋତେ ମୋ ନାମ ମୁରାରି
ତୁମ୍ଭ ପୁତ୍ର ଦୁଃଖ ଭାରି ଶୁଣିଲି କର୍ଣ୍ଣରେ
ମୋତେ ଲାଗେ ତୁମ୍ଭ ପୁତ୍ର ଭାବନା ନକର ।
ଏହା ଶୁଣି ଯଶୋଦା ଆସନ ଦେଲେ ଆଣି
ବଇଦ୍ୟ ବେଶେ ବସିଲେ ଦେବ ଚକ୍ରପାଣି ॥
ଆସନେ ବସିଣ ବୋଲେ ତବ ପୁତ୍ର ଆଣି
ରାଧିକାର କୋଳେଦିଅ ମୋର ବାକ୍ୟ ମାନି ।
ଯଶୋମତୀ ପୁତ୍ର ଦେଲେ ରାଧିକାର କୋଳେ
ରାଧାକୋଳ କଲେ କୃଷ୍ଣ ବ୍ୟାସଦେବ ବୋଲେ
ସନ୍ତୋଷ ଲଭିଲେ ଶୁଣି ଜଇମିନି ମୁନି
ଗଙ୍ଗାଧର ପାଣି ବୋଲେ ରଖ ଚକ୍ରପାଣି ।
ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟ ।

—*—

## ନବମ ଅଧ୍ୟାୟ

## ସହସ୍ର ଧାରରେ ଜଳ ଆଣିବାକୁ ଯାଇ ଗୋପିମାନଙ୍କର ଅପମାନ

ଜୈମିନିରୁବାଚ

ବ୍ୟାସଦେବ ପାଦଧରି ଜଇମିନି କହି
ଏଥିଅନ୍ତରେ ଚରିତ କହ ତପିସାଇଁ ।

ବ୍ୟାସଦେବ ଉବାଚ

ବ୍ୟାସଦେବ ବୋଲନ୍ତି ହେ ଶୁଣ ମୁନିବର
ଭବିଷ୍ୟପୁରାଣ ଅଟେ ସୁଖର ମନ୍ଦିର ॥
ଯଶୋମତୀ ବୋଲେ ବୈଦ୍ୟକହ କବାରହିଁ
କି ଔଷଧି ଦେଲେ ମୋର ବଞ୍ଚିବ କହ୍ନାଇ ।
ବେଦ୍ୟ ବୋଲେ ବ୍ୟାଧିଗ୍ରସ୍ତ ହୋଇଛି ଅନ୍ତରେ
ନୂତନ କଳସୀ ଏକ ଅଣାଅ ସତ୍ୱରେ ।
ଯଶୋମତୀ କଳସୀଏ ବୈଦ୍ୟଆଗେ ଦେଲେ
ବୈଦ୍ୟରାଜ ତହିଁରେ ସହସ୍ର ରନ୍ଧ୍ର କଲେ ।
ବୈଦ୍ୟ ବୋଲେ ଯଶୋମତୀ ମୋର ବାକ୍ୟମାନ
ପତିବ୍ରତା ଏକ ନାରୀ ଶୀଘ୍ର ଡାକଆଣ ।
ଯମୁନାନଦୀକୁ ଯାଇ ଜଳ ସେ ଆଣିବ
ସେ ଜଳ ସିଞ୍ଚିଲେ ପୁତ୍ର ଉଠିଣ ବସିବ ।

ସକଳ ଗୋପୀଙ୍କ ପାଦେ ଯଶୋଦା ପଡ଼ଇ
ଜଳ ଆଣି ବଞ୍ଚାଅ ମୋ ଅଞ୍ଚଳ ମାଧୋଇ ।
ସକଳେ ବୋଇଲେ ଏଥି ଛନ୍ତି ବେନଜଣ
ଜଟିଳା କୁଟିଳା ଗଲେ ବଞ୍ଚିବ ନନ୍ଦନ ।
ଯଶୋମତୀ ରାଣୀ ଧରି ଜଟିଳାର ପାଦ
ବୋଲେ ଜଳ ଆଣିଦେଲେ ମୋପୁତ୍ରବଞ୍ଚିବ ।
ଜଟିଳା କରୁଣ ଦୟା କନ୍ୟା ପଠାଇଲେ
କଳସୀ ଧରି ମୁଣ୍ଡରେ ମୁରୁକ ହସିଲେ ।
ଏତେ ନାରୀଗଣ ଥାଉଁ ଆମ୍ଭକୁ କହିଲେ
ଆମ୍ଭର ସମାନ ସତୀ ନାହିଁ ଭୂମଣ୍ଡଳେ ।
ସବୁ ନାରୀ ଉଚ୍ଚକରି ଯମୁନାକୁ ଯାଇ
ଅତ୍ୟନ୍ତ ଗର୍ବିତ ମନେ କଳସୀ ବୁଡ଼ାଇ ।
କାଖରେ ଘଟ ଘେନିଣ ଅତିବେଗେ ଚଳେ
ଯାଉଁ ଯାଉଁ ପଥ ମଧ୍ୟେ ଜଳ ପଡ଼େ ତଳେ ।
ପଥେ ଫେରି ଆସୁଥାଇ ହୃଦମଧ୍ୟେ ସ୍ମରି
ଅଜ୍ଞାନ ସମୟେ ଅବା ପାପ ଅଛି କରି ।
କଳସୀନେଇ ଯଶୋଦା ଅଗ୍ରେ ଥୋଇଦେଲେ
ଜଳ ଶୂନ୍ୟ ଦେଖି ଯଶୋମତୀ ବାଗୁରିଲେ ।
କୁଟିଳାକୁ ନିନ୍ଦାକରି ସବୁ ନାରୀଗଣ
କହୁଥାଇଁ ଅଇଲ ଏଥେଁ ଧିକ ତାର ଜ୍ଞାନ ।
ମୁଖେ ଲାଜ ନାହିଁ ତାର ବସିଲା ସଭାର
କେହୁ ବୋଲେ ନ ଚାହିଁବା ମୁଖଯେ ତାହାର
ଏହା ଶୁଣି ଜଟିଳା କାଖେ କଳସୀକୁ ନେଇ
ଯମୁନା ନଦୀର ତୀରେ ପ୍ରବେଶିଲା ଯାଇଁ ।
ମୁହିଁସତୀ ବୋଲି ଦୃଢ଼େ କାଖେ ଘଟତୋଳେ
ବସନ ତିନ୍ତିଲା ତହୁଁ କଳସୀର ଜଳେ ।
ଶୂନ୍ୟକୁମ୍ଭଆଣି ଦ୍ୟନ୍ତେ ବୈଦ୍ୟଦେଲେଗାଳି
ସହସ୍ର ଧାର କଳସୀ କଳଙ୍କ ଗୁଧଡ଼ି ।
ଗୋପରେ ସତୀ ଅସତୀ ଘଟ ବାରି ଦେବ
ଗରବ ଗଞ୍ଜିବା ପାଇଁ ଦେବାଧି-ଉଭବ ।
କାଖରେ କଳସୀ ଘେନ ଯଶୋଦା ଚଳନ୍ତେ
ଦେଖିକରି ବୈଦ୍ୟରାଜ ଉପୁକଲେ ଶଙ୍କେ ।
ଜନନୀ ଆଣିଲେ ଜଳ ମହୌଷଧି ନୋହି
ବୈଦ୍ୟବାକ୍ୟେଘଟଗୋଟିତଳେଦେଲେ ଥୋଇ
ସବୁ ଗୋପିଙ୍କି ବଞ୍ଚିତ କରି ଯଶୋମତୀ
ଏକ ଏକ ହୋଇଗଲେ ଯମୁନାର କତି ।
ଶୂନ୍ୟ ଘଟ ଆଣିଦେଲେ ଯଶୋଦାର ଠାଇଁ
ଏହାଦେଖି ଆଉ ଗୋପୀ ଉଠିଲେତ ନାହିଁ ।
ଏକ ଏକ ହୋଇ ଗଲେ ଜଳ ଆଣିବାରେ
କେହିଜଳ ନଆଣିଲେ ଶ୍ରୀକୃଷ୍ଣମାୟାରେ ।
ଯଶୋମତୀ ବୋଲେ ଆଉ ଉପାୟକ କରି
ଶୂନ୍ୟ ଘଟ ଆଣିଦେଲେ ସବୁ ବ୍ରଜନାରୀ ।
ଯେତେ ନାରୀଗଣ ଗଲେ ଜଳନାହିଁ ଆସେ
ସତୀହୋଇଣ ଅସତୀ ହେଲେ କର୍ମଦୋଷେ ।
ବୈଦ୍ୟବୋଲେ ଛି ଛି ବ୍ରଜଙ୍ଗନାମାନେନଷ୍ଟା
ଯେ ନାରୀ ପ୍ରଥମେଗଲା ସେ ନାରୀପାପିଷ୍ଠା ।
ବୈଦ୍ୟତବୋଲେ ଯଶୋମତୀ ଅଛି ଏକଜଣ
ଯେଉଁନାରୀ କୋଳେ ଅଛି ତୁମ୍ଭର ନନ୍ଦନ ।
ସବେ ବୋଲେ କୃଷ୍ଣଘେନ ବସ ଯଶୋମତୀ
ବଇଦ୍ୟବାକ୍ୟରେ ତହୁଁ ଚଳିଗଲେ ସତୀ ।
ଏକନାରୀବୋଲେ ବୈଦ୍ୟ ଧନ୍ୟବାଦ ଦେବା
ସେ ନାରୀ ଯେମନ୍ତ ସତୀ ତା ଆଗେ କହିବା ।
ଆଉ ଏକନାରୀ ବୋଲେ ଯାଉ ୨ ରହି
ଏଖଣି କହିବା କଥା ଉଚିତ ନୁହଇ ।
ଯଶୋଦା ବୋଇଲେ ରାଧା କୃଷ୍ଣମୋତେ ଦିଅ
ଘଟ ଘେନ ଯମୁନାକୁ ଜଳ ଆଣି ଯାଅ ।
କୃଷ୍ଣେ ଯଶୋଦାଙ୍କୁ ଦେଇ ଜଳଆଣି ଗଲେ
ଚୌତିଶଅକ୍ଷରେ ସେହୁସ୍ତୁତି ଆରମ୍ଭିଲେ ।
ବ୍ୟାସ ମହର୍ଷି କହିଲେ ଜୈମିନିଙ୍କ ଚାହିଁ
ଗଙ୍ଗାଧର ପାଣିକୁ ହେ ରଖ ଭବଗ୍ରାହୀ ।
ଇତି ଶ୍ରୀ ଭବିଷ୍ୟ ପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ନବମୋଽଧ୍ୟାୟଃ

—*—

## ଦଶମ ଅଧ୍ୟାୟ

## ରାଧାଙ୍କର କଳଙ୍କଭଞ୍ଜନ

### ଜୈମିନିରୁବାଚ

ଜଇମିନ ବୋଲୁଛନ୍ତି ବ୍ୟାସ ପାଦ ଧରି
ଏଥୁଅନ୍ତେ କସ କଲେ ରାଧିକା ସୁନ୍ଦରୀ ।

## ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
ଶ୍ରୀମତୀ କଲେକ ସ୍ତବ ଯମୁନାଜଳର ।
କଳସୀ ଘେନିଣ କାଖେ କାନ୍ଦଇ ଯୁବତୀ
କଳାଚାନ୍ଦ ଜାଣେ ମୁହିଁ ସତୀ କି ଅସତୀ ।
ଖଳ ଜନେ ହସେ କୃଷ୍ଣ ଖଳ ଖଳ କରି
ଖଳେ କୃପା କରିଲେ ସେ ତରି ଭବବାରି ।
ଗୋବିନ୍ଦ ଗୋପାଳ ଗୋପୀନାଥ ଗଦାଧର
ଘନ ଘନ ଡାକେ କୃଷ୍ଣ ମୋତେ କୃପାକର ।
ଉଲ୍ଲାସ ଜନ୍ମୁଛି ମନେ ଜଳ ଆସିବାରେ
ଓଙ୍କାରନୋହେ କଳଙ୍କୀ ଜାଣନ୍ତି ସଂସାରେ ।
ଚଳିବାକୁ ଅଚଳ ଯେ ମୋହର ଚରଣ
ଛୁଟିକରି ବୋଇଲେ ମୁଁ ତ୍ୟଜିବି ଜୀବନ ।
ଜଳ ନେବି ତୁମ୍ଭେ କୃପାକର ଅବିଗିରେ
ଝରଝର ଧାରବହେ ମୋ ବେନି ନେତ୍ରରେ ।
ନିତ୍ୟ ପୂଜୁଁ ବିଜେକରି ମୋତେ କରଧାର
ଟଳଟଳ ହୋଇ ଦେହ ପାଦ ନ ଚଳଇ ।
ଠକ ନନ୍ଦ କୁମାରୁ ତୁମ୍ଭେ କର ପାରି
ଡାକୁଛି ଅନ୍ତରେ ନାଥ ମୋରେ ଦୟାକରି ।
ଢେଉମାରି କଳସୀକୁ ପୂର୍ଣ୍ଣ କରାଇଲେ
ଆନନ୍ଦେ ଜଳ ଘେନିଣ ରାଧିକା ଚଳିଲେ ।
ତତ୍ତ୍ୱାବୋଧେ ଶ୍ରୀପଦ୍ମରେ ଦେଇ ତହିଁମନ
ଥକାହୋଇ ଜଳମଧ୍ୟେ ରହି କଲେ ପୂର୍ଣ୍ଣ ।
ଦେଲେ ନେଇଣ କଳସୀ ବୈଦ୍ୟର ଅଗ୍ରତ
ଧାରା ସହସ୍ରରୁ ଜଳ ନୁହଇ ପତିତ ।
ନମସ୍କାର କଲେ ବୈଦ୍ୟ ରାଧାର ପାଦରେ
ପାଦ-ଧୂଳି ବୋଲି ହେଲେ ନେଇ ମସ୍ତକରେ
ପୁଣି ବୈଦ୍ୟ ରାଧାପାଦେ କଲେକ ବିନତି
ବଡ଼ ଭାଗ୍ୟବତୀ ତୁ ଗୋ ବୋଲିକଲେ ଭକ୍ତି
ଭବ ଲୁହାଲୁହି ହୋନ୍ତି ସର୍ବ ଗୋପନାରୀ
ମିଛେ ରାଧିକାକୁ ସର୍ବେ ବୋଲନ୍ତି ଦୋଗୁଣୀ ।
ଜଳ ଘେନି ବୈଦ୍ୟରାଜ ମୁଖରେ ସିଞ୍ଚିଲେ
ରସିକ ନାଗର କୃଷ୍ଣ ଚମକି ଉଠିଲେ ।
ଲବଣୀ ଅଣିଣ କୃଷ୍ଣଙ୍କର ମୁଖେ ଦେଇ
ବଦନରେ ଚୁମ୍ବଦେଲେ ସ୍ନେହଭାବ ବହି ।

ସର୍ବ ଗୋପିନାରୀମାନେ ଲଜ୍ଜିତ ହୋଇଣ
ବାକ୍ୟ ନ କହି ଗୃହକୁ କଲେକ ଗମନ ।
ଯଶୋଦା ଦେବକୀ ବେନି ପୁତ୍ର କୋଳେ ଧରି
କ୍ଷମାକର ବୈଦ୍ୟରାଜ ଗୁଣ ନ ପାରେପାରି ।
ବୈଦ୍ୟବୋଲେ ରାଧାପ୍ରାୟ ନାହିଁ କେହିସତୀ
ଶ୍ରୀକୃଷ୍ଣ ରାଧାପାଦରେ ରହୁ ମୋର ମତି ।
ରାଣୀବୋଲେ ରାଧିକା ନ ଆସିଥିଲେ ଏଥେ
ହରାଇଥାନ୍ତି ମୋ ପୁତ୍ର ବଞ୍ଚନ୍ତାକେମନ୍ତେ ।
ରାଧାବୋଲେ ଯଶୋମତୀ ମୋର କେଉଁ ଗୁଣୀ
ବୈଦ୍ୟଲାଗି ତୋରପୁତ୍ର ପାଇଲେଜୀବନ ।
ବୈଦ୍ୟବୋଲେ ଯଶୋମତୀ ମୋର ବାକ୍ୟ ରଖ
ମୋହର ଆଗକୁ ଶୀଘ୍ର ରାଧିକାକୁ ଡାକ ।
ଯଶୋଦା ବଚନେ ରାଧା ବୈଦ୍ୟଆଗେ ଗଲେ
ଶ୍ରୀମତୀଙ୍କୁ ବୈଦ୍ୟରାଜ ପ୍ରଶଂସି କହିଲେ ।
ତୁମ୍ଭଲାଗି କୃଷ୍ଣଚନ୍ଦ୍ର ପାଇଲେ ଜୀବନ
ତୁମ୍ଭେ ମହାସତୀଶ୍ରେଷ୍ଠ ଆମ୍ଭ ବୈଦ୍ୟପଣ ।
ବୈଦ୍ୟ ବୋଇଲେ ଯଶୋଦା ମୋର ବାକ୍ୟମାନ
ଆଜ ତୁମ୍ଭ ଗୃହେ ଆମ୍ଭେ କରିବୁ ଭୋଜନ ।
ରାଧାଙ୍କ ରନ୍ଧନ ଅନ୍ନ ଖାଇଲେ କହ୍ନାଇଁ
ଆୟୁଷ ବଢ଼ିବ ତାର ବଳବନ୍ତ ହୋଇ ।
ଶୁଣିଣ ଯଶୋଦା ଗଲେ ରାଧିକାକୁ ନେଇ
ସ୍ନାନ ପ୍ରସ୍ତୁତ କରାଇ ଯଜ୍ଞାତ ଭିଆଇ ।
ରାଧିକାକୁ ଯଶୋମତୀ ବୋଲନ୍ତି ବଚନ
ଭଲକରି ରାନ୍ଧ ତୁମ୍ଭେ ଅନ୍ନ ଯେ ବ୍ୟଞ୍ଜନ ।
ହରଷେ ଯାଇ ଶ୍ରୀମତୀ କରିଲେ ରନ୍ଧନ
ଏକ ଏକ କରି କଲେ ଚୌରାଶୀ ବ୍ୟଞ୍ଜନ ।
ସୁବର୍ଣ୍ଣଥାଳରେ ଅନ୍ନ ବ୍ୟଞ୍ଜନ ବାଢ଼ିଲେ
ବୈଦ୍ୟରାଜ କୃଷ୍ଣଚନ୍ଦ୍ର ଏକତ୍ର ଭୁଞ୍ଜିଲେ ।
ବୈଦ୍ୟ ସଙ୍ଗରେ ଶ୍ରୀକୃଷ୍ଣ କରନ୍ତେ ଭୋଜନ
ଦେଖିଣ ଯଶୋଦା ରାଣୀ ହରଷିତ ମନ ।
ଭୋଜନ କରିଣ ଦୁହେଁ କଲେ ଆଚମନ
କର୍ପୂର ତାମ୍ବୁଳ ଦେଲେ ମୁଖର ଶୋଧନ ।
ବୈଦ୍ୟବୋଲେ ଯଶୋମତୀ ଆଶୀର୍ବାଦ କର
ନିଜବାସେ ଯିବା ବେଳ ହେଉଛି ଉତ୍ତର ।
କି ଧନ ଦେଇ ତୋଷିବି ମୁହିଁ ତୁମ୍ଭ ମନ
ବୈଦ୍ୟବୋଲେ ଯଶୋମତୀ ନୋହେ ଏ ବିଧାନ

ତୁମ୍ଭେ ଯେ ଆମ୍ଭର ମାତ ମୁଁ ତୁମ୍ଭର ପୁଅ
ପାଦେ ପଡ଼ଲେ କଲ୍ୟାଣ ତୁମ୍ଭେ କରୁଥାଅ ।
ଏହାକହି ବୈଦ୍ୟରାଜ କଲେକ ଗମନ
ବ୍ୟାସ ମହର୍ଷି କହିଲେ ଜୈମିନି ଆଗେଣ ।
ରାଧିକା ବିଦା ହୋଇଣ ଗଲେ ନିଜବାସ
ଶ୍ରୀକୃଷ୍ଣ କହିଲେ ତାଙ୍କୁ ସକଳ ସନ୍ଦେଶ ।
କଳଙ୍କ ଭଞ୍ଜନ କଲେ ଶ୍ରୀପୁରୁଷୋତ୍ତମ
ଧନ୍ୟଧନ୍ୟ ଅଟନ୍ତି ସେ ଶ୍ରୀରାମ ମୋହନ ।
ଭବିଷ୍ୟ ପୁରାଣ କଲି ପ୍ରାକୃତେ ଲିଖନ ।
ଗଙ୍ଗାଧର ପାଣିଙ୍କୁ ହେ ରଖ ନାରାୟଣ ।
ଇତି ଶ୍ରୀ ଭବିଷ୍ୟ ପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ଦଶମୋଽଧ୍ୟାୟ

—*—

## ଏକାଦଶ ଅଧ୍ୟାୟ

## ମୁସଲମାନ ମାନଙ୍କର ମକାତୀର୍ଥର ବିବରଣ

ଜୈମିନିରୁବାଚ -
ବ୍ୟାସ ପାଦ ଧରଣ ପୁଚ୍ଛେ ଜଇମିନି
ଏଥୁଅନ୍ତେ କେଉଁକୃତ୍ୟ କଲେ ଚକ୍ରପାଣି ।
ଏଥିର ଚରିତ ମୋତେ କହ ମୁନିବର
ତବ ମୁଖୁ ଶୁଣିଲେ ମୋ ଶରୀରହେବ ସ୍ଥିର ।
ବ୍ୟାସଦେବ ଉବାଚ
ବ୍ୟାସ ମହର୍ଷି ବୋଲନ୍ତି ମୁନିବର ଶୁଣ
ଏଥୁଅନ୍ତେ ଯେଉଁ କୃତ୍ୟ କଲେ ନାରାୟଣ
ଯୁଗଶେଷ ହୋଇବାର ଜାଣି ଆଦିମୂଳ
ଅଦ୍ଭୁତେ ଉଠିଲା ଗୋପ ପୁରରେ ଚହଳ ।
ଆଚମ୍ବିତ ହେଲେ ଜନ କହଲ ଦେଖିଣ
ଦିବସେ ଉଲ୍କା ବରଷିଲେ ଘନଘନ ॥
ମହୀ କମ୍ପମାନ ହେଲା ଥରହର ହୋଇ
ଅନ୍ତରେ ଜାଣିଲେ ତାହା ବ୍ରହ୍ମାଣ୍ଡ ଗୋସାଇଁ
ଯୁଗଶେଷ ଜାଣିଣ ସେ ନନ୍ଦ ପୁରେ ଗଲେ
ନନ୍ଦସ୍ଥଳେ ରାଜେକର ବିଶ୍ରାମ ଲଭିଲେ ।

କଲି ଆଗମନ ଦେଖି ଦେବ ନାରାୟଣ
ଦାରୁ ବ୍ରହ୍ମେ ବିଜେକଲେ ନୀଳ କନ୍ଦରେଣ ।
ଏଥୁ ଅନ୍ତରେ ଚରିତ ଶୁଣ ଦେଇ ମନ
ଗଙ୍ଗା କୂଳରେ ମାଳବ ଦେଶ ପୂର୍ଣ୍ଣଗ୍ରାମ ।
ରତ୍ନାକର ଅଗ୍ନି ହୋତ୍ରୀ ପତ୍ନୀ ପଦ୍ମାବତୀ
କରଣ କୁମ୍ଭକ ଯାଗ ଲଭିଲେ ସନ୍ତତି ।
ଆରମ୍ଭ କରିଲେ ଯାଗ ବିଧି ଅନୁସରି
ଶମି ବୃକ୍ଷର ସମିଧ ଆଣି ଯତ୍ନକରି ।
ଯଜ୍ଞଶାଳା କରାଇଲେ ବେଦର ବିଧାନେ
ବେଦ ବିଧାନରେ ତାହା ରଚିତ ଯତନେ
ନାନା ଉପସ୍କରେ ଦ୍ରବ୍ୟ କଲେ ସେ ରଚନା
ପୂର୍ବ କର୍ମଫଳ ଯୋଗେ କର୍ମର ବାସନା ।
ଏ ଯୋଗେ ଘରୁ ନିର୍ମିତ ଗୋରୁ ପକ୍ଷୀ ସାର
ଗୋମେଧାଦି କରି ଯାଗେ ନାନା ଉପସ୍କର ।
ପନିର ଯେ ନାରିକେଳ ଗବାଦି ସଞ୍ଚାର
ଆତପ ତଣ୍ଡୁଳ ଘେନି ଯାଗର ସମ୍ଭାର ।
ରତ୍ନାକର ଅଗ୍ନି ହୋତ୍ରୀ ପୁରୋହିତେ ରାଇ
ଯାଗବିଧି କଲେ ସର୍ବ ଦ୍ରବ୍ୟମାନ ନେଇ ।
ସମିଧେ ଆହୁତି ଦେଇ ମନ୍ତ୍ର ଉଚ୍ଚାରିଲେ
ମନ୍ତ୍ର ଯୋଗେ ଯାଗ ପକ୍ଷୀ ଚରୁକୁ ଇଚ୍ଛିଲେ ।
ରାଜଋଷି ବୋଇଲେ ହେ ଶୁଣ ଦ୍ୱିଜବର
ଗୋରୁହତ୍ୟା କରିଯାଏ ଯାଗର ବେଭାର ।
ଜୀବ ଥାଉଁ ଅସ୍ଥି ମାଂସ ଶୃଙ୍ଗମୂତ୍ର ଆଣ
ଜଳେ ଧୌତ କରିବାର ଯାଗର ପ୍ରମାଣ ।
ଏହିବେଳେ ପଦ୍ମାବତୀ ଦୂତ ବରଗିଲା
ଯାଗେ ଚରୁ ଦେବେ ଯାହା ମୋ ଶରିବଳିଲା
ମୋ ମନକୁ ଚଇତନ କହିଲା ମଣାଇ
ଚରୁ ଆଣିଦେଲେ ମୁହିଁ ଗ୍ରାସ କରିବଇଁ ।
ମୋ ମନେ ରହିଲା ଆଶା ଶୁଣସି ବିଧାନ
ପଦ୍ମାବତୀ ବାକ୍ୟେ ଦୂତ କଲାକ ଗମନ ।
ଯାଗସ୍ଥାନେ କହିଲା ସେ ଦ୍ୱିଜର ପାଖର
ତୁମ୍ଭ ପତ୍ନୀ ପଦ୍ମାବତୀ କହି ମୋ ଆଗର ।
ଯାଗ ଚରୁ ନେଲେ ସେହୁ କରିବେ ଗ୍ରହଣ
ଏଥିକୁ ଧନ୍ୟର କରି କରହେ ଯତନ ।
ଦ୍ୱିଜବର ଶୁଣିଣ ସେ ଭାଳେ ହୃଦଗତେ
ଗୋରୁମାଂସ ମୋର ପତ୍ନୀ ଭକ୍ଷିବ କେମନ୍ତେ ।

ବ୍ରହ୍ମ କର୍ମ ଦୂର ହେବ ଏଣୁ କର୍ମ ଯେନ
ଏମନ୍ତ ବିଚାର କରି କହେ ଦ୍ୱିଜମଣି ।
ଯାଅ ତୁମ୍ଭେ ଆମ୍ଭେ ପଛେ ଦେବା ଯେ ପଠାଇ
ଏହା କହିଣ ମଉନେ ରହେ ପଦ୍ମାସନେଁ ।
ଶୁଣୁଥିଲେ ପୁରୋହିତ ଏଥିର ଚରିତ
ଲୁଚାଇ ରଖିଲେ ଚରୁ କରିଣ ଗୁପତ ।
ଗୋପନରେ ସେହି ଚରୁ ଦୂତହସ୍ତେ ଦେଲେ
ଗର୍ଦ୍ଦ ଆଣା ମେଣ୍ଟିବାକୁ ତାହାକୁ ବୋଇଲେ
ଚରୁ ନେଇ ପଦ୍ମାବତୀ ଆଗରେ ସେ ଦେଲ
ଗୋପନ କରିଣ ତୁମ୍ଭ ଲାଗି ଆଣିଲଇଁ ।
ଗର୍ଦ୍ଦକୁ କ୍ଷେପିଲା ଚରୁ ମନ ସ୍ଥିର କରି
ହୃଦ ପଦ୍ମ ସ୍ଥିରକରି ସ୍ମରି ଦଇତ୍ୟାରି ।
ରାଜଋଷି ବାକ୍ୟେ ଯାଗ ପୂର୍ଣ୍ଣ କରାଇଲେ
ଗୋରୁମାଂସ ଅସ୍ଥି ଯେନ ଭୂମିରେ ପୋତିଲେ
ଯଥାକାଳେ ପଦ୍ମାବତୀ ପୁତ୍ର ପ୍ରସବିଲେ
ରତ୍ନାକର ଦେଖି ମନେ ଆନନ୍ଦ ଲଭିଲେ ।
ବଢ଼ିଣ କୁମର ଦଶବରଷ ହୋଇଲା
ରାମ ନ ଭଜ ରହେମ ନାମ ଉଚ୍ଚାରିଲା ।
ରହେମ ଦେବତା ତାର କର୍ଣ୍ଣେ ବିଶ୍ରାମିଲେ
ବିଦ୍ୟାବଳରେ ମୌଲବିସାହେବ୍ ବୋଲାଇଲେ
ତୀର୍ଥ ଯାତ୍ରା କରିବାକୁ ମନେ ବିଚାରିଲେ
ମହେଶ୍ୱର ଲିଙ୍ଗକୁ ସେ କରରେ ଧରିଲେ ।
ପଶ୍ଚିମକୁ ମୁଖକରି କଲା ସେ ଗମନ
ଯାଆନ୍ତେ ମିଳିଲା ସେହୁ କିଷ୍କିନ୍ଧ୍ୟା କାନନ ।
ନିଶି ପୋହାଇଲା ରହି ସେ ଘୋର ବନର
ଆରଦିନ ଗୋଦାବରୀ ହୋଇଲାକ ପାର ।
ନଦୀ ପାର ହୋଇଣ ସେ ବାରିଧି ଉତ୍ତରେ
ଚଳେ ସେହୁ ଧୀରେ ଧୀରେ ଗହନ ବନରେ ।
ଯାନ୍ତେ ପଥେ ଭେଟ ହୋଇ ଗର୍ଦ୍ଦଭ ଆନନ
ସେଖ ସୈୟଦ ଆବର ମୋଗଲ ପଠାଣ ।
ଫକିରକୁ ଯେନ ପଞ୍ଚଜଣ ଚଳିଗଲେ
ଗହନ ବନରେ ଯାଇଁ ପ୍ରବେଶ ହୋଇଲେ ।
ଅନ୍ତରେ ଜାଣିଲେ ପ୍ରଭୁ ଶ୍ରୀମଧୁସୂଦନ
ସୁଧର୍ମୀ ସଭାରେ ଆଜ ମିଳି ମୁସଲ୍‌ମାନ ।
ଏହାଭାବି ନାରାୟଣ ଫକିର ହୋଇଲେ
ନିବିଡ଼ ବନ ମଧ୍ୟରେ ଆସି ପ୍ରବେଶିଲେ ।

ପଞ୍ଚଜଣଙ୍କୁ ଦେଖିଣ ହେଲେ ଚମତ୍କାର
କାହିଁ ଅଇଲ ବୋଲିଣ ବୋଇଲେ ଉତ୍ତର ।
ଫକିର ବୋଇଲେ ଆମ୍ଭେ ଗହନ ବନରେ
ଭସ୍ମମୂର୍ତ୍ତି ସ୍ଥାନ ଦେଖି ଅଇଲୁ ଭୟରେ ।
ଯେଣୁ ସେ ସ୍ଥାନେ ପ୍ରବେଶି ଦେଖି ଭସ୍ମମୂର୍ତ୍ତି
ସେ ସ୍ଥାନେ ମିଳିଲେ ଆଉ ନ ଆସଇ ବର୍ତ୍ତି ।
ସେହି ଭୟରେ ସେ ସ୍ଥାନୁ ପଳାଇ ଅଇଲୁ
ଦୈବ ଯୋଗରେ ତୁମ୍ଭଙ୍କୁ ଏବେ ଭେଟିଲୁ
ଏଠାରେ ରହିବା ଆମେ ନିବାସ କରିଣ
ମକ୍କାଉ ବୋଲିଣ ଦେବା ଗ୍ରାମତହିଁ ନାମ ।
ମାୟା ଭିଆଇଲେ ତହିଁ ଦେବ ନାରାୟଣ
ବିଶ୍ୱକର୍ମା ଆସି ପୁର କଲାକ ନିର୍ମାଣ ।
ଭେଦକରି ଷାଠିସସ୍ର ପୁର ଭିଆଇଲେ
କୂଳାନ୍ତକ ଧନୁ ମନ୍ତ୍ର ହୃଦୟରେ ଜପିଲେ ।
ଜପିବାରୁ ଷଟକନ୍ୟା ଲଭିଲେ ଜନମ
ସେ ଷଟ ଜଣଙ୍କୁ ବଧି କରାଇ ଘଟନ ।
ମହେଶ ଦେବତା ପାଇଁ ପୁର ଭିଆଇଲେ ।
ମରହଟା ବୋଲିଣ ସେହିପୁରେ ନାମ ଦେଲେ ।
ବିଜେ କରିଲେ ମହେଶ ତହିଁ କ୍ଷିତିପତି
ନିଜ ଗୋତ୍ର ଭେଦକରି ନେଲେ ତାଙ୍କଜାତି ।
ଯେବେ ହିନ୍ଦୁ ଆସିଣ ସେ ପୂଜିବଟି ମୋତେ
ହସ୍ତେ ଜଳଦେଇ ସେ ପୂଜିବ ବିଲ୍ୱପତ୍ରେ ।
ବରଦେଲେ ଜମ୍ବୁଦ୍ୱୀପେ ହୋଇବ ରାଜନ
ଏହା କହିଣ ମହେଶ ହୋଇଲେ ମଉନ ।
ସ୍ୱୟଂ ଫକିର ତାହାଙ୍କୁ ବିଧାନ କହିଲେ
ଦୋସ୍ତାନାଦୋସ୍ତା ବୋଲି ଶାସ୍ତ୍ର ଦୀକ୍ଷାଦେଲେ ।
ମୌଲାଜିଅ ଭକ୍ତି ଯେନ ଯୁଗରାଜ୍ୟ କରି
କ୍ଷୀରପାନେ ଦୋଷହୁଏ ଭ୍ରଷ୍ଟ ସମସରି ।
ଶବ ପାଇଁ ଶ୍ମଶାନରେ ଅଗ୍ନି ନ ସ୍ଥାପିବ
ମୃତ୍ତିକାରେ ତାହା ଦେଇ ପୋତି ପକାଇବ ।
ଯମାନ କରିବ ବଂଶ ରାସ ପ୍ରମାଣରେ
ଏହାକହି ଅନ୍ତର୍ହିତ ହୋଇଲେ ଫକିର ।
ବ୍ୟାସଦେବ ଜୈମିନିଙ୍କ ଅଗ୍ରତେ କହନ୍ତି
ଭବିଷ୍ୟ ପୁରାଣ ଲେଖି ମକାର ବିଭୂତି ।
ଗଙ୍ଗାଧର ପାଣିକଲେ ପ୍ରକୃତେ ପ୍ରକାଶ
ପ୍ରଭୁଙ୍କ ପଦ୍ମପାଦରେ ନିତ୍ୟ କରିଆଶ ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ

—*—

## ଦ୍ୱାଦଶ ଅଧ୍ୟାୟ

## କଳିଯୁଗେ ନୀଳକନ୍ଦରେ ପ୍ରଭୁଙ୍କ

## ବିରାଜମାନ

ଜୈମିନି ଉବାଚ

ଜୈମିନି କହନ୍ତି ତହୁଁ ବ୍ୟାସ ପାଦଧରି
ଏଥୁ ଅନ୍ତରେ ଚରିତ କହନ୍ତୁ ବିସ୍ତାରି ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
କହିବା ଭବିଷ୍ୟ ବାଣୀ ଆଗତ ବିସ୍ତର ।
ବାଳିପୁତ୍ର ଅଙ୍ଗଦହିଁ ସେ ଜରାଶବର
ପୂର୍ବକର୍ମ ଦୁଷ୍କୃତରୁ ହୋଇ ଅବତାର ।
ଶ୍ରୀଚରଣେ ଶରାଘାତ କଲାକ ପାମର
ଅର୍ଜ୍ଜୁନହୁଁ କଳା ନେଲେ ପ୍ରଭୁ ଦାମୋଦର ।
ସ୍ୱର୍ଗ ବାଣୀ ଶୁଣି ଦେବ ଶବ ଘେନିଗଲେ
ସମୁଦ୍ର ଜଳରେ ନେଇ ତାହାକୁ ମେଲିଲେ
ସୁବାହୁ ଦ୍ୱାପର ଯୁଗେ ଅକ୍ରୂର ମନ୍ଦିରେ
ଦେବ ଦାମୋଦର ଯାଇ ତହିଁ ବିଜେକଲେ ॥
ଅକ୍ରୂରକୁ ଦୟାକରି ବୋଇଲେ ବଚନ
କଳିଯୁଗେ ହେବ ବସୁ ଶବର ତୋ ନାମ ।
ଏମନ୍ତ ମୁରାରି ମୁହିଁ ସନ୍ଥ ସାଧୁ ସିଦ୍ଧ
କଳିଯୁଗରେ ପୂଜିବେ ଯେ ନୀଳ ମାଧବ ।
ଏମନ୍ତେଣ ସେ ଶବର ବିଅଁ ପୂଜୁଥିଲା
ପୂର୍ବର ବିହିତ ବାକ୍ୟେ ସୁବେଶୀ ମିଳିଲା ।
ସୁବେଶୀ ବ୍ରାହ୍ମଣେ ବିଶ୍ୱ ଲଳିତା ଯେ ହୋଇ
ନୀଳକନ୍ଦରରେ ବିଜେ ବ୍ରହ୍ମାଣ୍ଡ ଗୋସାଇଁ ।
ସେ ନୀଳକନ୍ଦରେ ବସି ଲୀଳା ଭିଆଇଲେ
ମଉନେ ବସିଣ ସବୁ ଅନ୍ତରେ ଜାଣିଲେ ।

କଳି ଯୁଗର ଭବିଷ୍ୟ ଶୁଣ ଦେଇ ମନ
କଳଙ୍କି ରୂପକୁ ପ୍ରଭୁ କରନ୍ତି ଯେ ଧ୍ୟାନ ।
ବ୍ରାହ୍ମଣହିଁ ଜାତି ଦେବେ ଶୂଦ୍ରର ଘରେଣ
ଜଳ ସ୍ପର୍ଶ ଘେନିଥିବେ ଶୂଦ୍ରର ସଙ୍ଗେଣ ।
ଦେବତା ପାଳିବ ନାହିଁ ହୋଇବେ ଖଣ୍ଡନ
ଦେବକେ ପାଳିଲେ ଦେହେଣ ହୋଇବ ନିଧନ
ଯାହା ଉପୁଜିବ ରାଜା ଦୁଇଭାଗ ନେବ
ହେଲି କୋହଳାରେ ଗୋରୁ ଧନାଦି ବିକିବ ।
ଏମନ୍ତ ହୋଇବ କଳିଯୁଗର ବେଭାର
କଳିଯୁଗେ ନ ରହିବେ କେହି ଦଣ୍ଡଧର ।
କ୍ଷତ୍ରି ବୃତ୍ତି ପଣ ଆଉ ନକରିବେ କେହୁ
ତେଣୁ ଗରବ ଗୁଞ୍ଜିବେ ପ୍ରଭୁ ମହାବାହୁ ।
ତମାଦି ନର୍ଘୋଷେ କଳି ପୁରୁଷ ଚଳିବ
ସକଳ ଜନର କଣ୍ଠେ ନିବନ୍ଧେ ବସିବ ।
ଧର୍ମ ଜ୍ଞାନ ଖଣ୍ଡନରେ ଅଜ୍ଞାନ ବଢ଼ାଇ
କନିଷ୍ଠହୁଁ ଜ୍ୟେଷ୍ଠଭାଇ ଅପମାନ ପାଇ ।
ପିତାଠାରେ ଦୋଷୀପୁତ୍ର ପିତାପୁତ୍ରେ ଦୋଷୀ
ପତି ପତ୍ନୀ କର୍ମ ଲୟେ ଜ୍ଞାନେ ଅବିଶ୍ୱାସୀ ।
ସେ ସ୍ୱରୂପ ହୋଇ ବିଶ୍ୱାସହି ଯିବ ଦୂରେ
ଅଣେତରୂପକୁ ବସି ଧ୍ୟାଇବେ ନିତ୍ୟରେ ।
ଯୋଗଘରେ ବସିବେ ଯେ ଯୋଗମାତା ଧ୍ୟାୟି
ସଜିବେ ଅଜୀବ ରୂପ ପାଷାଣ ବୋଲାଇ ।
କଳିଯୁଗ ଦେଖି ସର୍ବଦେବ ଦେବୀଗଣ
କଥା ନକହି ରହିବେ ମଉନ ଭାବେଣ ।
ନାନା ଉତ୍ପାତମାନ ଅଦିନେ ହୋଇବ
ଅଲୌକିକ ଦେଖାଯିବ ଲୋକେ ଅସମ୍ଭବ ।
ଗୋଲି ଗଉଡ଼ ଏମାନେ ବୋଲାଇବେ ପଣ୍ଡା
କାନ୍ଧରେ କୋଦାଳ ଘେନି ଧରିବେ ଗୋଦଣ୍ଡା
ମନ୍ତ୍ର ଶିଖି ଗାରୁଡ଼ିଆ ହୋଇବେ ଅପାର
ହାସ୍ୟ କଥା କହୁଥିବେ ହରିକଥା ଠାର ।
ମନ୍ଦ ବୁଦ୍ଧି ଛନ୍ଦ କରି ଅରଜିବେ ଧନ
କୃପଣ ହୋଇବେ ସାଧୁ ନ ଦେଇଣ ଦାନ ।
ଅତିଥି ନିବାରି ହୋଇ ଦ୍ୱାରୁଁ ଫେରିଯିବେ
କ୍ଷୁଧାନଳେ ଦଗ୍ଧ ହୋଇ ଅଭିଶାପ ଦେବେ
ରାଜଯକ୍ଷ୍ମା ରୋଗେ ଜନେ ମରିବେ ବହୁତ
କୁଷ୍ଠର ଦଣ୍ଡେ ଛିଣ୍ଡିବ ଲୋକ ପାଦହସ୍ତ ।

ସାଧୁସନ୍ଥଜନେ ବେଶ୍ୟାସଙ୍ଗେ ରତହୋଇ
ମିଳେ ମିଳେ ତପ ଜପ ଲୋକଙ୍କୁ ଦେଖାଇ ।
କଳିଯୁଗେ ଜ୍ଞାନ ଭଣ୍ଡ ଅନେକ ହୋଇବେ
ଆଖି ବୁଜ ମାଳମାନ ଗଡ଼ାଉଣ ଥିବେ ।
ବିଶ୍ୱାସ କଥା କହିବ ନାହିଁ ତାଙ୍କଠାରେ
ହିତୋପଦେଶ ନ ଦେଇ ରହିବ ନିରୋଳେ ।
ଷଡ଼ରସ ସ୍ୱାଦୁ ବୁଝି ଯେ ସାଧୁ ଅଛନ୍ତି
ନିଗମ ସ୍ଥାନେ ସେମାନେ ଦିନ କାଟୁଛନ୍ତି ।
ବନଚର ପରାଏ ସେ କରନ୍ତି ଯେ ସ୍ଥିତି
ନିତ ଘରେ ନିତ୍ୟରେ ସେ ଦେଇଥାନ୍ତି ମତି
ଗ୍ରାମ ଗୀତ ନ ଶୁଣନ୍ତି ସେ ବେନି କର୍ଣ୍ଣରେ
କନ୍ଦମୂଳ ଫଳ ଆଦି ଭୁଞ୍ଜନ୍ତି ମୁଖରେ ।
ନାମାମୃତ ପାନେ ଥାଇ ଉଦର ତୃପତ
ବିକଶିତ ହୋଇ ପୋଷିଥାନ୍ତି ପଞ୍ଚଭୂତ ।
ଅସାଧୁ ଜନ ଯେ ଦେଶ ବିଦେଶ ଭ୍ରମନ୍ତି
ସ୍ତ୍ରୀ ଅବଲୋକନରେ ବିଭ୍ରମରେ ମାତି ।
ଗ୍ରାମ ହାଟେ ବିଶ୍ରାମାର୍ଥେ ବୋଲନ୍ତି ସଂସାରି
ଉନମତ୍ତ ଭ୍ରମନ୍ତି ସେ ନାନା ବିଦ୍ୟାଧରି ।
ଧନ ଅରଜନେ ମାତି ଦେଇ ମହୌଷଧି
ବୋଲନ୍ତି ଏହା ଖାଇଲେ ଭଲହେବ ବ୍ୟାଧି ।
ବୈଦ୍ୟ ଆଉର କରିଣ ଅରଜନ୍ତି ଧନ
ଶେଷକାଳେ ଯଥାବେଳେ ହେବ ଆତ୍ମାଶୂନ୍ୟ ।
ନ ପାବନ୍ତି ଗତି ମୁକ୍ତି ଆହେ ତପୋଧନ
ଜଳ ବିନା କୂପମଧ୍ୟ ଦିଶଇ ଯେସନ ।
ଏକାକାର ଏକାଧାର ଏକତାକୁ ନେଇ
ସୋମେଶ୍ୱର ଶମୀବୃକ୍ଷ ମୂଳେଦ୍ୱାର ହୋଇ ।
ଚିତ୍ରଉତ୍ପଳା ନଦୀରୁ ଏକ ଏକ ଧାର
ଗଙ୍ଗାରେ ପ୍ରବେଶ ଯେହ୍ନେ ମହିମ ଭାବର ।
କଳିଯୁଗେ ଏକ ନଦୀ ଏକ ଦରଶନ
କଳିଯୁଗେ ଭୋଗ ପାଞ୍ଚସହସ୍ର ବର୍ଷ ଜାଣ ।
ତହୁଁ ଷଷ୍ଠ ବରଷରେ କର୍କଡ଼ାମାସରେ
କୃଷ୍ଣ ଅମାବାସ୍ୟା ରବି ଦ୍ୱାଦଶ ଦଣ୍ଡରେ
ଆବର୍ତ୍ତିକ ମେଘମାଳ ବିନ୍ଧ୍ୟ ପର୍ବତରେ
ସୈନ୍ୟ ଯେନ ମିଳିବେ ରୁଦ୍ରସମ୍ମୁଖରେ ।
ଘୋରନାଦ କରୁଁ ବଜ୍ର ହୋଇବ ପତନ
ଘନଘନ ହୋଇବ ଯେ ଚପଳାସ୍ଫୁରଣ ।

ତାହାଙ୍କ ସରଳସ୍ୱନ ଅତ୍ୟନ୍ତ ଗମ୍ଭୀର
ଆମ୍ବାର ବିନାଶେ ବରଷିବ ଜଳଧାର ।
ପୃଥ୍ୱୀରେ ଅନ୍ଧାର ହେବ ଶବେଶ ପରାଏ
ସୋମେଶ୍ୱର ଠାରୁ ଧାର ଉତ୍ତରକୁ ବହି
ରାମଚନ୍ଦ୍ରଙ୍କର ବଂଶ ଅଙ୍କହିଁ ପ୍ରମାଣ
ଗଙ୍ଗାଶୂନ୍ୟ ହେବ ପୃଥ୍ୱୀ ବୃନ୍ଦାବନ ହୀନ ।
ନବଦିନପାଏ ବୃଷ୍ଟି ଏକଭାବେ ହେବ
ଜଇମୁନିଅଗ୍ରତରେ କହି ବ୍ୟାସଦେବ ।
ଗଙ୍ଗାଧର ପ୍ରାକୃତରେ ଭାଷେ ସେ ରହସ୍ୟ
ପାଦପଦ୍ମେ ରଖ ମୋତେ ପ୍ରଭୁ ପୀତବାସ ।

ଇତି ଶ୍ରୀ ଭବିଷ୍ୟ ପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।

—*—

## ତ୍ରୟୋଦଶ ଅଧ୍ୟାୟ

## କଳିଯୁଗ ମାହାତ୍ମ୍ୟ

ଜୈମିନିରୁବାଚ

ଜେମିନି କହନ୍ତି ବ୍ୟାସଙ୍କର ପାଦଧରି
କଳିଯୁଗର ଭବିଷ୍ୟ କହ ତପସ୍ୱୀ ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
କହିବା ଆଗତ ସ୍ଥିତ ଚିତ୍ତ କର ସ୍ଥିର ।
ଭବାନୀ ଶଙ୍କର ଭଗୁଁ ପୃଥ୍ୱୀ ଉତପତ୍ତି
ବ୍ରହ୍ମମୟୀ ସୃଷ୍ଟି ଗୋଟି ବେଦହୁଁ ଜନ୍ମିଛି ।
ଛତିଶ ଜାତିର ମଧ୍ୟେ ଅଷ୍ଟାଦଶ ବର୍ଣ୍ଣ
ସବୁଜାତି ପରେ ଶ୍ରେଷ୍ଠ ଅଟନ୍ତି ବ୍ରାହ୍ମଣ ।
ଶୂଦ୍ରାନ୍ନ କରି ଆହାର ଜାତି ନ ବିଚାରି
ବେଦ ଛାଡ଼ି ବ୍ରହ୍ମକୁଳେ ହେବେଅତ୍ୟାଗୃହୀ ।
ବ୍ରାହ୍ମଣମାନେ ହଟିବେ ପରଙ୍କର ନାଶି
ଆଉର ବିପ୍ରରମାନ ହେବେ ଦୂର କରି ।

ଗାୟତ୍ରୀ ସନ୍ଧ୍ୟା ଛାଡ଼ିଣ ପଢ଼ିବେ ଗାରୁଡ଼
ବାଣିଜ୍ୟେ ପୋଷିହୋଇବେ ବେଦବିଦ୍ୟାଛାଡ଼ି ।
ତର୍କାଦିବିଦ୍ୟା ସମସ୍ତ କରିବେ ଅଭ୍ୟାସ
ଯାଗ ନ କରନ୍ତେ ହେବ ବେଦର ବିନାଶ ।
ଅଗ୍ନି ନ ପୂଜିବେ ବେଦ ବିଦ୍ୟାମାନ ପଢ଼ି
କୁପଥେ ବଢ଼ିବ ଚିତ୍ତ ସୁପଥକୁ ଛାଡ଼ି ।
କଳିଯୁଗେ ବ୍ରହ୍ମପଦ ନ ରହିବ ଆଉ
ମଳିନ ଦିଶିବ ରୂପ ଯେହ୍ନେ ଚନ୍ଦ୍ର ରାହୁ ।
ଅପୂଜା ପାଇବେ ଦେବେ ନ ପୂଜିବେ ଜନ
ଚଳି ଯାଇଣ ଅଗ୍ରତେ ନ ପାଇ ବରଣ ।
ସତ୍ୟ ଦୂରକରି ମିଥ୍ୟା କରିବେ ବେଭାର
ସ୍ୱଜାତି ବିରସ୍ତୁ କରି ପୋଷିବେ ଉଦର ।
ଘୋର ବଳଦେ ବାହିବେ କାର୍ପାସ ଲବଣ
ଲୌହ ଯେ ପାଷାଣ କଣ୍ଠା ପନିଆରମାନ ।
ଆଖୁ କନ୍ଦମୂଳ ସାରୁ କୃଷି ଆଚରିବେ
ମୁଣ୍ଡରେ ଘେନିଣ ତାହା ବୁଲାଇ ବିକିବେ ।
ବ୍ରାହ୍ମଣୀ ବେଶ୍ୟାଙ୍କ ମତ କରିବେ ଧାରଣ
ଅମୋକ୍ଷେ ପାକଶାଳାରେ କରିବେ ରନ୍ଧନ ।
ପାଦ ବସ୍ତ୍ର ଅଧଉତେ ପାନ ଯାକି କଳେ
ଏତେ ଅଲକ୍ଷଣେ ମିଳି ଯାଇ ପାକଶାଳେ ।
ଅନ୍ୟାୟ ବିଚାରି କଳିଯୁଗର ବେଭାର
ବ୍ରହ୍ମଚର୍ଯ୍ୟପଣମାନ ଯିବ ହୋଇଦୂର ।
ବ୍ରହ୍ମଭକ୍ତ ଆଚାର ଶୂଦ୍ରେ କରିବେଟିରକ୍ଷା
ବ୍ରାହ୍ମଣେ ଗାୟତ୍ରୀ ବିଦ୍ୟା ଦେବେତହୁଁ ଶିକ୍ଷା ।
ନାନାବି କର୍ମରେ ଅଗ୍ରେ ଦେହ ଶୌଚବନ୍ତ
ସନ୍ଧ୍ୟାଦିକରିବେ ଶୂଦ୍ରେଜପି ବେଦତନ୍ତ୍ର ।
ନୀଚଜନେ ବ୍ୟବହାର ନ ବାଛିବେ ଜାତି
ଗୋପନେ କରିବେ ସଙ୍ଗ ରହସ୍ୟ ମାରତି ।
ଦୁହିତା ପିତାର ସଙ୍ଗେ ପୀରତି କରିବେ
ଭାଇ ଭଉଣୀ ସହିତେ ସୁରତି ଇଚ୍ଛିବେ ।
ଖୁଡ଼ୀ ଜେଠାଇ ବୋଲି ନ ମାନିବେ ଜନ
ମାଉସୀ ପୁତ୍ରୁରୀ ମଧ୍ୟେ ହେବ ରତିରଣ ।
ସାବତଜନନୀ ସଙ୍ଗେ ପୁତ୍ର ରସକେଳି
ମାନିନା ମହିଭକ୍ତେଜ ଅଗ୍ରେ ଯିବ ଚଳି ।
କଳିଯୁଗେ ସ୍ତ୍ରୀମାନେ ବିଟପୀ ହୋଇବେ
ଭର୍ତ୍ତାକୁ ମରାଇ ପରେ ପୀରତିକରିବେ ।

କଳିଯୁଗେ ଯାତ ହୋଇ ଅଯୌବନ୍ୟ ଯୁବତୀ
ନିତି ନିତି ଇଚ୍ଛୁଥିବେ ନବନବ ପତି ।
ଏକ ପୁରୁଷକୁ ସହସ୍ରେ ଅଙ୍ଗନା ବେଢ଼ିଣ
ବୋଲିବେ ତାକୁ ଆମ୍ଭର ହର କାମବାଣ ।
ରତିଶ୍ରାନ୍ତେ ନିଉତର ବ୍ରହ୍ମ ନଷ୍ଟ ହୋଇ
ବିତରି ବରଷ ମଧ୍ୟେ ଯମଆଳେ ଯାଇ ।
ଯାହାକୁ ଇଚ୍ଛିବ ସେହୁ କରିବ ରମଣ
ନୟନେ ଦେଖିବ ଅଙ୍ଗେ ଛାଡ଼ଇ ମଦନ ।
ରଣ୍ଡରେ ପଣ୍ଡିତ କଳି ଯୁଗରେ ବୋଲାଇ
ବିଷ୍ଣୁଙ୍କର ନାମ ଅଙ୍ଗେ ବଡ଼ ବାଧା ହୋଇ ।
ନରମାନେ ବିଷ୍ଣୁ ନାମ ସୁଖ ନ ମଣିବେ
ବନ୍ଧୁତା ଯମଙ୍କ ଲଭି ଦୁର୍ମତି ହୋଇବେ ।
ନଶିହ୍ନିବେ ଭିକ୍ଷୁକ ଯେ ଅତିଥି ବ୍ରାହ୍ମଣ
ଅନ୍ଧ ମନ୍ଦକୁ ବୋଲିବେ କୁଳଣ ବଚନ ।
କାଳେ ଦଣ୍ଡ ସେ ପାଇବେ ଶମନ ନଗରେ
ମେରୁକୁ ଗମନ୍ତି ପଶୁ ଯେସନେ ଦୁଃଖରେ ।
ଉପାଧ୍ୟାନେ ହୋଇଣ ଅରଜିବେ ଧନ
ଭୋଗ ନକରିବେ ଯେହ୍ନେ ମଧୁ ମକ୍ଷିମାନ ।
ଅର୍ଥଲୋଭି ନରେନ୍ଦ୍ରହିଁ ସେ ଧନ ହରିବେ
ଚଣ୍ଡାଳରେ ଧନମାନେ ଜୀବନ ତେଜିବେ ।
ସର୍ବବ୍ୟାଧି ମାନଙ୍କର ଔଷଧ ଅଛଇ
ଚଣ୍ଡାଳରେ ମିବେ ନାଶ ଶ୍ରୀମୁଖ ବାକ୍ୟହିଁ ।
ଜ୍ୟୋତିଷ ପଣ୍ଡିତମାନେ ବିଦ୍ୟାକୁ ଛାଡ଼ିବେ
ଯୋଗସାଧନ କରିଣ ଯାହା ସେ କହିବେ ।
ମିଥ୍ୟାହେବ ତାଙ୍କ ବାକ୍ୟ ସତ୍ୟ ନଫଳିବ
ସାହାସିଯାପଣ ସେହୁ ଆପଣେ ବହିବ ।
ଅଯୋଗେ ହୋଇବ ବୃଷ୍ଟି ଅକାଳହିଁ ଜାଣି
ଶସ୍ୟ ମାନ ବୁଣି ବୃଥାହିଁ ଦେ ହେବେ ଗୁଣି
ବୋଲିବେ ଏ ଗର୍ଭୁର୍ମାସ୍ୟା ପ୍ରାୟେ ଜଣାଗଲା
ଅଧିକ ବରଷା ଏହୁ କେ ବୃଥା ବୁଣିଲା ।
ଦେଖାଏ କ୍ଷିତିରେ ବହୁ ବିପଦ ପଡ଼ିବ
ଅର୍କର ପ୍ରଚଣ୍ଡ ତାପେ ଭସ୍ମୀଭୂତ ହେବ ।
ଜ୍ୟେଷ୍ଠ ଜନ ବଚନ କନିଷ୍ଠ ନମାନିବେ
ତାଙ୍କବାକ୍ୟେ ଗୁରୁଜନ ମଉନେ ରହିବେ ।
କୁଳବଧୂ ମାନେ ସର୍ବେ ଅନ୍ୟାୟ ବିଚାରି
ଗୃହ ଦିବସ ଶୋଇବେ ଶଯ୍ୟା ଏକ କରି ।

ଗୁ ରୁଙ୍କଠାରେ କରିବେ ଅଭକ୍ତି ବେଭାର
କହିବା ମାତ୍ରକେ ଦେବେ ସେମାନେ ଉତ୍ତର ।
କୁବାକ୍ୟ କହି ସେମାନେ ଦନ୍ତ ବିଦାରିବେ
ଗୁରୁକାର ବଚନ ଶୁଣି ଅପସରି ଯିବେ ।
ବଧୂଙ୍କ ବଚନ ଶାଶୁ ନ ପାରିବେ ଏଡ଼ି
ଯେ ବେଳେ କହିବେ ଯାହାଥିବେ କର୍ଣ୍ଣେଡ଼ି
ତାଙ୍କର ବଚନମାନ ପାଳିବେ ସେ ବେଗେ
ସ୍ଲାନ ଶରୀରେ ବଧୂର ଥିବେ ଦାସୀଭାବେ ।
ଏମନ୍ତେ କଳିର ସ୍ଥିତି ଅଟଇ ପ୍ରମାଣ
ଶ୍ୱେତରୂପୀ କହିଲେ ଯା କଳିର ଲକ୍ଷଣ ।
ବର୍ଣ୍ଣିଣ କହିଲେ କଳିଯୁଗର ବେଭାର
ବ୍ୟାସ ମହର୍ଷି କହିଲେ ଜୈମିନି ଆଗର ॥
ଭବିଷ୍ୟ ପୁରାଣ କଲି ପ୍ରାକୃତେ ଲିଖନ
ଗଙ୍ଗାଧର ପାଣିକୁ ହେ ରଖ ଜନାର୍ଦ୍ଦନ ।

ଇତିଶ୍ରୀ ଭବିଷ୍ୟପୁରାଣ ବ୍ୟାସ ଜୈମିନି
ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।

—*—

## ଚତୁର୍ଦ୍ଦଶ ଅଧ୍ୟାୟ

## କଳିଯୁଗେ ଭୂମିକମ୍ପ

ଜୈମିନିରୁବାଚ
ଜୈମିନି କହନ୍ତି ବ୍ୟାସଦେବଙ୍କ ଆଗର
ଏଥୁ ଅନ୍ତରେ ଚରିତ କହ ମୁନିବର ।
ବ୍ୟାସଦେବ ଉବାଚ
ବ୍ୟାସ ମହର୍ଷି ବୋଲନ୍ତି ଶୁଣ ଜଇମିନି
ଭବିଷ୍ୟପୁରାଣ ଗ୍ରନ୍ଥ ଅପୂର୍ବ କାହାଣୀ ।
ନାନାକୂଟ କପଟରେ ଧନ ଅର୍ଜିବେ
କପଟ ବଚନ କହି ସକଳେ ତୋଷିବେ ।
ଗତ କଥାକୁ କହିଣ ଛାଡ଼ି ପଞ୍ଚମନ
ମୋହରେ ବଶ ହୋଇଣ ଦେବେ ଗୁରୁଧନ
ସ୍ତମ୍ଭନ ମୋହନ ବିଦ୍ୟା ହୋଇବ ପ୍ରଚୁର
ଜୀବହୀନ ମନ୍ତ୍ରେ ଗୁ ରୁ କରିବେ ବେପାର ।
ପ୍ରଧାନ ଦେବତା ମନ୍ତ୍ର ମୂର୍ତ୍ତେ ନ ପୂଜିଣ
ନିରନ୍ତର ରହି ଦେବେ କଳିଯୁଗେ ଧ୍ୟାନ ।
ତମଗୁଣ ପ୍ରକାଶିବ ହୃଦପଦ୍ମେ ରହି
ମତି ଚଞ୍ଚଳ ହୁଅନ୍ତେ ନ ବର୍ତ୍ତିବେ କେହି ।
ତମରୁ ଉତ୍ପନ୍ନ ହିଂସା ହିଂସାରୁହିଁ କୋପ
ତମ ନିଳେ ଜାତ ହୋଇ ବ୍ୟାଧି ବୋଲି ପାପ
ବସୁଧାକୁ ଲଗି ଭରା ରୁଧିର ନିକଳି
ନ ସହି ପାରିଣ ଉଚେ ଘୁଡ଼ଇ ବୋବାଳି ।
ହରିଧ୍ୱନି ଶବଦରେ ହୁଳ ହୁଳାହୁଳି
ପାତକ ଅତିପାତକ ହୁଅଇ ମୋଚନ ।
ବୁଧଜନମାନେ ତହିଁ ହୃଦରେ ବିଚାରି
ଅତି ଅନ୍ୟାୟ ହୋଇଲେ କମ୍ପେ ବସୁନ୍ଧରା ।
ଜଇମିନି ପୁଚ୍ଛାକଲେ ବ୍ୟାସ ପାଦ ଧରି
କି ନିମନ୍ତେ କମ୍ପମାନ ହୁଏ ବସୁନ୍ଧରା ।
ଏଥିର ଚରିତ ମୋତେ କହ ମୁନିବର
ତବମୁଖରୁ ଶୁଣି ଯିବ ସନ୍ଦେହ ମୋହର ।
ବ୍ୟାସ ମହର୍ଷି କହନ୍ତି ଶୁଣ ଋଷି ସୁତ
ଭବିଷ୍ୟ ପୁରାଣେ ଅଛି ଅଦ୍ଭୁତ ଚରିତ ।
ଶ୍ୱେତବାରାହ କଳ୍ପରେ ଏହି କଳିଯୁଗ
କହିବା ବିବିଧ ନ୍ୟାୟ ଯେମନ୍ତ ସମ୍ଭବ ।
ସୁଧର୍ମା ନାମରେ ବନ ସୁଧର୍ମା ପର୍ବତେ
ସୁଧର୍ମା ସଭାର ନ୍ୟାୟ ନାମ ମହାକଳ୍ପେ ।
ମୋହକଳ୍ପ ନ୍ୟାୟ ଏହୁ ଅନ୍ୟାୟ ଅପାର
ଭବିଷ୍ୟ ପୁରାଣେ କହି ଭବିଷ୍ୟ ଉତ୍ତର ।
ଧର୍ମଚନ୍ଦ୍ର ଋଷି ବ୍ରହ୍ମା ଅଗ୍ରତେ ପୁଚ୍ଛିଲେ
କହ ବେଦବର ନ୍ୟାୟ ବୋଲିଣ ବୋଇଲେ
ବ୍ରହ୍ମା ବୋଇଲେ ତୁମ୍ଭେ ହେ ଶୁଣ ଋଷିବର
କହିବା ବିବିଧ ନ୍ୟାୟ ଶତ୍ରୁକର ସ୍ଥିର ।
ପୃଥ୍ୱୀ ସ୍ଥାପିଣ ମିଳିଲେ ସର୍ବ ଦେବଗଣ
ବିସ୍ତରିଣ ନାମ ଦେଲେ ସୁଧର୍ମା ଯେ ବନ ।
ସୁଧର୍ମା ବୋଲିଣ ଏକ ପରବତ ଥାଇ
ନାନାବିଧ ଜୀବ ଜନ୍ତୁ ଭ୍ରମନ୍ତି ଯେ ତହିଁ ।
ଶାର୍ଦ୍ଦୂଳ ଭଲ୍ଲୁକ ଆଦି ବରାହ ହରିଣୀ
ଝିଙ୍କ ବାଦୁଡ଼ିଆ ମୃଗ ନାନାବିଧ ପୁଣି ।
ଡେରଣ୍ଡି କୁହାଣ୍ଡି ହସ୍ତୀ ଆବର ଯେ ଧେନୁ
ଚମରୀ ଗର୍ଦ୍ଦଭ ଓଟ ବଳବନ୍ତ ତନୁ ।

ନାନାବିଧ ବାନର ଦଧିମୁଖା କାଳାଞ୍ଜନ
ଭୈରବୀ ବେତାଳୀ ରଙ୍ଗୀ କୁରଙ୍ଗୀ ଯେ ଶ୍ୱାନ
କୋକିଳ ମୟୂର ଆଦି କାକ ଡାହୁକାଦି
କୁକୁଟ କୁକ୍କୁଟୀ ଶୁକ ସାରୀ ଝିଙ୍କ ସାକ ।
ସେ ବନରେ ଷଡ଼ଋତୁ ପ୍ରକାଶିତ ହୋଇ
ଅହରହ ବସନ୍ତ ପବନ ବହୁଥାଇ ।
ଆନନ୍ଦ ମନରେ ସର୍ବ ଜୀବମାନେ ଥାନ୍ତି
କେହି କାହାରକୁ ମନେ ନ କରଇ ଖିନ୍ତି ।
ସେ ପର୍ବତ ଆୟତନ ଅଟେ ତିନି କୋଶ
ଏବନ ଉପାନ୍ତେ ଜୀବ କରନ୍ତି ଯେ ଗ୍ରାସ ।
ଯେ ଯାହାର ଭକ୍ଷ୍ୟଦ୍ରବ୍ୟ ଅନାୟାସେ ପାନ୍ତି ।
ଉଦର ପୂରିଲେ ଆସି ସେ ବନେ ମିଳନ୍ତି ।
ସକଳ ଦେବତା ବସି କରନ୍ତି ବିଚାର
ଭୁଜମାସ ଶୁକ୍ଳପକ୍ଷ ଚତୁର୍ଥୀ ଦିନର ।
କଳିଯୁଗେ କଳ୍କିରୂପେ ଶ୍ରୀକ୍ଷେତ୍ର ମଧ୍ୟରେ
ବିଜୟ କରିବେ ପ୍ରଭୁ ବଉଦ୍ଧ ରୂପରେ ।
ଆଧାନ ମୂରତି କଳ୍କି ରୂପ ପ୍ରକାଶନ୍ତେ
ସଂସାରେ ମ୍ଳେଚ୍ଛ ସମୂହ ମିଳିବେ ନିଜ ପଥେ ।
ବିଶ୍ୱାସ ନକରି ଜନେ ହେବେ ହତପାତ
ଲକ୍ଷବାଜା ପରେ ହେବେ ମହନ୍ତ ନୃନାଥ ।
ସତପ୍ରସ୍ତା ଅଙ୍କ ଅର୍ଦ୍ଧେ ନ ବର୍ତ୍ତିବେ ଆଉ
ଅଷ୍ଟଅଙ୍କ ପଞ୍ଚ ବର୍ଷେ ଗର୍ଜ୍ଜି ମହାବାହୁ
ନାନାବିଧ ଅଭକ୍ଷ୍ୟ ମାନ କରିବେ ଭକ୍ଷଣ
ନ ମାନିବେ କଇବର୍ତ୍ତ ଆମିଷ ଭୋଜନ ।
ଘରେ ଘରେ ବ୍ରହ୍ମଜ୍ଞାନୀ ଅନେକ ହୋଇବେ
ଜାତି ଭ୍ରଷ୍ଟ କରାଇଣ ମେଳି ଭିଆଇବେ ।
କୁରୁକ୍ଷେତ୍ର କରାଇଣ କରି ହରିଧ୍ୱନ
କେବଳହିଁ ଧନଲୋଭେ କରାଇବେ ଜ୍ଞାନୀ ।
କୁଟକପଟେ କରିବେ ବାଣିଜ୍ୟ ବେପାର
କୋଠକରି ରଖିବେ ନ କରିଣ ଆହାର ।
ଆତ୍ମାକୁ ତୋଷି ନ କରି ରଖିବେ ସେ ଧନ
ଦାନ ନ କରିଣ ବ୍ୟର୍ଥେ ହାରିବେ ଜୀବନ ।
ରାମ ରାଜାଙ୍କ ପଚଶ ଅଙ୍କେ ବହୁଧ୍ୱନି
ଝିଙ୍କଲେ ହାରିବେ ପ୍ରାଣ ହୋଇନ୍ତେ ମାଜହାନି
ସ୍ଥାନ ସ୍ଥାନକେ ପଡ଼ିଣ ରହି ବହୁ ଶବ
ଅଷ୍ଟଦଣ୍ଡ ପ୍ରମାଣରେ ହିଙ୍ଗୁଳା ବହିବ ।

ବୃଷ ମାସ ଶୁକ୍ଳ ପକ୍ଷ ପୂର୍ଣ୍ଣିମାର ଦିନ
ଦିବସ ଚବିଶ ଦଣ୍ଡେ ଜୀବ ଚନ୍ଦ୍ରସ୍ଥାନ ।
ଗୁରୁ ଚନ୍ଦ୍ରଚଣ୍ଡାଳୀ ଦିବସ ଶନିଶ୍ଚର ବାସର
ଯମ କଣ୍ଟକ ଯୋଗ ନେସ ବୃଷ ସମ୍ବତ୍ସର ।
କୋଟିକରେ ଏକ କୋଟି ରହିବେ ହେ ଜନ
ତଦନ୍ତରେ ସତ୍ୟଯୁଗ ବୋଲାଇବ ନାମ ।
ତିନଶତକ ବରଷ ସୁଖେ ମହୀପାଳ
ତଦନ୍ତେ ପଞ୍ଚାଶ ବର୍ଷେ ହେବ ମହୀ କଳ ।
ସର୍ବ ଦେବତା ବ୍ରାହ୍ମଣ ବଚନ ଶୁଣିଲେ
ଶୁଣି ଶିର ହଲାବନ୍ତେ ମୃଗ ସେ ଦେଖିଲେ ।
ଯଦି ବସୁମତୀ ଶିରୁଁ ବାଳେକ ହଳିବ
ସପ୍ତଦ୍ୱୀପା ପୃଥ୍ୱୀ ରସାତଳରେ ପଡ଼ିବ ।
ବ୍ରହ୍ମାଙ୍କ ଆଗରେ ଭୃଗୁ ଏସନ କହିଲେ
ଶୁଣି ବେଦବର ତହୁଁ ହୃଦେ ବିଚାରିଲେ ।
ଗୋମନ୍ତ ଋଷିଙ୍କୁ ବ୍ରହ୍ମା ବହନେ ଅଣାଇ
ବୋଇଲେ କର୍ଣ୍ଣର ଗୁରୁ ଅଟ ଋଷିସାଇଁ ।
ସକଳ ନାମ କରଣ କରିଅଛ ହେ ମୁଖ୍ୟ
ବିଚାରି କରିଣ ମୃଗ-ନାମ ତୁମ୍ଭେ ରଖ ।
ବ୍ରହ୍ମାଙ୍କ ବଚନେ ଋଷି ବିବେଚନା କଲେ
ଗୁରୁ ଚିନ୍ତନ ମନ୍ତ୍ର ଗୋଟି ହୃଦେ ସ୍ମରିଲେ ।
ସ୍ମରନ୍ତେ ମାଳ ଲେଖିତ ବେନିଗୋଟି ନାରୀ
ଆଗରେ ଉଭା ହୋଇଲେ ଦିବ୍ୟରୂପ ଧରି ।
ସୌନ୍ଦର୍ଯ୍ୟରେ ସେ ଦୁହିଙ୍କୁ ଉପମା ନୁହେ ସମ
ନୟନେ ଦେଖିଲେ ଅଙ୍ଗେ ପୀଡ଼ଇ ମଦନ ।
ସେ ବେନି ନାରୀଙ୍କ ଗୁଣ ଅଟଇ ଅପାର
ପଦ୍ମେ ମାତା ଅଟନ୍ତି ସେ ବିଶ୍ୱାମିତ୍ରଙ୍କର ।
ମାଳ ଯେ ଲୋହିତ ନାରୀ ମନେ ବିଚାରିଣ
କର୍ଣ୍ଣମଧ୍ୟେ ଯାଗ ଥିଲେ ଆରମ୍ଭ କରିଣ ।
ବେନି କର୍ଣ୍ଣ ଛେଦି ଯଜ୍ଞେ ଦେଇଥିଲେ ହେତୁ
ତେଣୁ ମହିମା ତାଙ୍କର ଅଟେ ମହାମେରୁ ।
ଏ ନାରୀଙ୍କୁ ବସୁମତୀ ନୟନେ ଦେଖିଲେ
ବେନି କର୍ଣ୍ଣ ଦାନ ଦିବ ବୋଲିଣ ବୋଇଲେ ।
ସେ ନାରୀଙ୍କୁ ଋଷିବର ବେଗେ ଘେନି ଗଲେ
ବସୁମତୀଙ୍କ ଅଗ୍ରତେ ଉଭା କରାଇଲେ ।
ତାହାଙ୍କୁ ଦେଖିଣ ବସୁମତୀ ସ୍ତମ୍ଭିଭୂତ
ଦେଖୁ ଦେଖୁ ବେନି କର୍ଣ୍ଣ ହୋଇଲା ଯେହିତ

ବଧିର ହୋଇଣ ସେହୁ ବାକ୍ୟ ନ ଶୁଣନ୍ତି
ବିସ୍ତରିକଲେ ହୃଦରେ ତହିଁ ବେଦପନ୍ତି ।
ଗୁରୁ ବଚନ ଶୁଣି ଯେବେ ବାକ୍ୟ ନ ଶୁଣିବ
ବଧିର ହୋଇଣ ସେହୁ ଦିନକାଳ ନେବ ।
ଏହା କହି ବେଦବର କମଣ୍ଡଳୁ ଘେନି
ହେଟ ମାଥେ ସୁମରିଲେ ବ୍ରହ୍ମତନ୍ତୁ ପୁଣି ।
ଶରୀରେ ନେଟାଇଲ୍ ତନ୍ତୁ ନାଦ ରମ୍ୟ ଜ୍ଞାନ
ଚକ୍ଷୁଶ୍ରବା ବୋଲି ବ୍ରହ୍ମା ଦେଲେ ନାଗନାମ ।
ଗୁରୁଗୋଟି ଶ୍ରୁତି ହେଉ ନତ ନୋହୁ ଶିର
ଏହି ଆଜ୍ଞା ଦେଲେ ପିତା ବ୍ରହ୍ମାଣ୍ଡ ଈଶ୍ୱର ।
ଧର୍ମ୍ମଚଣ୍ଡ ରୁଷି ଆଗେ କହି ବେଦବର
ବ୍ୟାସ ମହର୍ଷି କହିଲେ ଜୈମିନି ଆଗର ।
ଗଙ୍ଗାଧର ପାଣି କଲେ ପ୍ରାକୃତେ ଲିଖନ
ବ୍ରହ୍ମାଣ୍ଡପତି ଚରଣେ ରଖି ମନ ଜ୍ଞାନ ।

ଇତି ଶ୍ରୀ ଭବିଷ୍ୟ ପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟ

—*—

## ପଞ୍ଚଦଶ ଅଧ୍ୟାୟ

## ନବ ଋଷିଙ୍କର ନବ କାର୍ଯ୍ୟ ବିବରଣ

ଜୈମିନିରୁବାଚ

ଜେମିନି ବୋଲନ୍ତି ବ୍ୟାସଦେବଙ୍କ ଅଗ୍ରତେ
ଭବିଷ୍ୟ ପୁରାଣ କହ ପରାଶର ସୁତେ ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
କହିବି ଭବିଷ୍ୟ ଗୀତ ଚିତ୍ତ କର ସ୍ଥିର ।
ଗୁରୁଲକ୍ଷ ବତିଶ ଯେ ସପ୍ତକଳି ଯୁଗ
ଯେଉଁ ମତେ ନୃପତି କରିବେ ଯେତେଭୋଗ ।
ଏକମନେ ଶୁଣ ନୃପତିଙ୍କ ଭୋଗମାନ
ସତ୍ୟ ତ୍ରେତୟା ଦ୍ୱାପର କଳିର ରାଜନ ।
ସତ୍ୟଯୁଗ ନୃପନାଥ ଗୁରୁଯୁଗ ରାଜା
ଅଙ୍ଗ ବଙ୍ଗ କଳିଙ୍ଗ କନୌଜ ଦେଶ ରାଜା ।
ଅଙ୍ଗ ଦେଶେ ନରପତି ହେବେ ଭୃଗୁବଂଶୀ
ଛିନପଦ୍ମ ସୈନ୍ୟ ତାର କର୍ମକାର ଋଷି ।
ଧନଧାନ୍ୟ ଅପ୍ରମିତ ଅକଳିତ ସୈନ୍ୟ
ସତ୍ୟେ ସେ ପାଳଇ ଦେଶ ଆଗୁର୍ଯ୍ୟ ସୁଜ୍ଞାନ
ଅଜ୍ଞାନକୁ ଦୂରକରି ହୃଦମ୍ବୁ କମଳ
କେବଳ ହୃଦୟେ ଚିନ୍ତା ପ୍ରଜାର କୁଶଳ ।
ରାଜଧର୍ମ ଦେଖି ଇନ୍ଦ୍ର ହରଷ ଲକ୍ଷଣ
ଦୂତ ବରଗିଣ ଗୃହ ମେଘକୁ ରାଇଣ ।
ବୋଲେ ଆବର୍ତ୍ତ ସମ୍ବର୍ତ୍ତ ଦ୍ରୋଣ ଯେ ପୁଷ୍କର
ତୁମ୍ଭମାନଙ୍କର ସୈନ୍ୟ ଅନନ୍ତ ଅପାର ।
ବ୍ରଜରେ ବନ୍ଧନ ଅଛୁ କରକା ଆବର
ବିଦ୍ୟୁଲ୍ଲତା ପାଷାଣାଦି ଯୁଗାଦି ଠାକୁର ।
ସମସ୍ତ ସୈନ୍ୟମାନଙ୍କୁ ଗୁମୁରେ ବସାଇ
ବୋଲେ ଭୃଗୁରାଜ ଦେଶ ପାଳି ସୁଖେଯାଇ ।
ଉତ୍ତମ ସୁଶାନ୍ତ ରାଜା ଧର୍ମ ଅଛୁ କରି
ଯାଗ ଯଜ୍ଞ କରିଅଛୁ ଦୃଢ଼ ବ୍ରତାୟୁଷୀ ।
ସଂସାର ମଧ୍ୟରେ ଅଛୁ ଯେତେ ଯେତେ ବ୍ରତ
ସମସ୍ତଙ୍କି କରୁଛନ୍ତି ହୋଇଣ ଉଷତ ।
ଯୋଗଭରେ ଦାନ ଧର୍ମ କରଇ ବିଶେଷ
ଭୋଜନେ ତୋଷନ୍ତି ବିପ୍ର ସାଧୁ ସନ୍ଥ ଶିଷ୍ୟ ।
ଦେଖିଲେ ଦୁର୍ଭିକ୍ଷ ଅନ୍ନ ଦାନ ସେ ଦିଅନ୍ତି
ଯେ ଯାହା ମାଗିଲେ ଦ୍ୟନ୍ତି ନକରିଣ ନାସ୍ତି ।
ଉତ୍ତମେ ପାଳିଲେ ସୁଖୀ ହୋଇବ ରାଜନ
ଏଥୁ ଅନ୍ତରେ ଚରିତ ଶୁଣ ଦେଇ ମନ ।
ଭରଦ୍ୱାଜବଂଶିକ ସେ ବଙ୍ଗଦେଶ ରାଜା
ସର୍ବଜନ ମିଳିଣ କରନ୍ତି ପାଦପୂଜା ।
ନିରନ୍ତର ଇଚ୍ଛାକରେ ପ୍ରଜାଙ୍କର ସୁଖ
ନିନ୍ଦା ଯେ କରଇ ତାଙ୍କୁ ନ ମଣଇ ଦୁଃଖ ।
ମେରୁର ପରାୟେ ସହେ ବଚନ ଗମ୍ଭୀର
ମନେ ଅମର୍ଷ ନ ଥାଇ ଅଟଇ ସେ ସ୍ଥିର ।
ଏକଦିନେ ବିଚାରିଲେ ନୃପ ଶିରୋମଣି
କରିବା ଉତ୍ତମ କାର୍ଯ୍ୟ ଉଠିବ ସେ ଧ୍ୱନି ।

ବିପ୍ରଗଣ ଏକଦିନେ ଦିଗବିଜେ କଲେ
ଅନେକ ଦେଶରେ ଦ୍ୱିଜଗଣ ଅଣାଇଲେ ।
ମଣିପୁରେ ସଭା ସେହୁ ଭିଆଇ ସତ୍ୱର
ନିର୍ମଳ ବିପିନ ସ୍ଥାନ ଅଟେ ଗଙ୍ଗାକୂଳ ।
ଆସନେ ବସାଇ ବିପ୍ରେ ବଚନ ଉଚ୍ଚାରି
ଏମନ୍ତ ବିଚାର ସେହୁ କରେ ଦଣ୍ଡଧାରୀ ।
ଯେ କାର୍ଯ୍ୟ କରିବା ତାହା ଯୁଗେ ଯୁଗେ ଥିବ
ସର୍ବ ଶାସ୍ତ୍ର ମାନଙ୍କରେ ଗଣନା ହୋଇବ ।
ନୃପତି ବଚନେ ଦ୍ୱିଜ ବୋଲନ୍ତି ବଚନ
ଯାହା ପୁଚ୍ଛା କର ଶୁଣ ତହିଁର ବିଧାନ ।
ଅଣାଅ ବିହିତେ ତୁମ୍ଭେ ନବ ଋଷିବର
ଯାହାସେ ବୋଲିବେ ବାକ୍ୟ ଏସ୍ରିତରେ ସାର
ଦ୍ୱିଜଙ୍କ ବଚନେ ରାଜା ବରିଗଲେ ଦୂତ
ନୈମିଷାରଣ୍ୟରେ ଯାଇ ମିଳିଲେ ତ୍ୱରିତ ।
ଏକାସନେ ନବଋଷି ବସିଣ ଅଛନ୍ତି
ତାହାଙ୍କ ପାଦ ପଦ୍ମରେ କରନ୍ତି ବିନତି ।
ପ୍ରମାଣ କରିଣ ତହୁଁ ବୋଇଲେ ବଚନ
ଶାରଙ୍ଗ ମନୁ ପେଷିଲେ ତୁମ୍ଭ ସନ୍ନିଧାନ ।
ବିଜୟ କରିବ ତୁମ୍ଭେ ଗଙ୍ଗାର ନିକଟ
ସଭା ଭିଆଇଛନ୍ତି ରାଜା ଘେନ ସଙ୍ଗେ ଥାଟ ।
କରିବ କୀରତିମାନ କରିଛନ୍ତି ବାସନା
ବିଜେକଲେ ତହାଙ୍କର ଯିବ ଦୁର୍ଭବନା ।
ଶୁଣିଣ ଯେ ନବଋଷି ହରଷ ଅନ୍ତର
ନୈମିଷାରଣ୍ୟରୁ ତହୁଁ ହୋଇଲେ ବାହାର
ମଣିପୁରେ ଗଙ୍ଗାକୂଳେ ମିଳିଲେକ ଯାଇ
ଦେଖିଣ ନୃପତି ତାଙ୍କୁ ଗୌରବେ ବସାଇ ।
ଆସନେ ବସାଇ ବୋଲେ ବିନୟ ବଚନ
ନୟନେ ନ ଧାରେ ନିଦ୍ରା ମନେ ଥାଉଁ ଧ୍ୟାନ
କେମନ୍ତେ ଏ କ୍ଷିତିମଧ୍ୟେ ସୁଖ୍ୟାତି ରହିବ
କରାଇବା ଆମ୍ଭେ ତାହା ଯେମନ୍ତେ ବୋଲିବ ।
ତୁମ୍ଭଜ୍ଞାନ ପ୍ରମାଣରେ ଯେଉଁ କୀର୍ତ୍ତିସାର
ବିଚାର କରିଣ କହ ତୁମ୍ଭେ ଋଷିବର ।
ଅଗସ୍ତ୍ୟ ପୁଲସ୍ତ୍ୟ ଭୃଗୁ ଉଶନା ଯେ ପୁଣି
ଭାର୍ଗବ ଗୋମନ୍ତ ନାରଦ ରୋମାଞ୍ଚ ଭଣି ।
ଜନକ ସହିତ ନବ ଋଷିଏ ବସିଲେ
ଏକ ମୁଖ ହୋଇ ସର୍ବେ ବିଚାର ଯେ କଲେ

ନୃପତି ବିଚାରୁଅଛ କରି ଦୃଢ଼ଜ୍ଞାନ
ଆମ୍ଭେ ନବଋଷି ତାହା ଜାଣିବା କେସନ ।
ନୃପତିର ହୃଦକଥା କେମନ୍ତେ ଜାଣିବା
ଜାଣିଲେ ହୃଦର ଚିନ୍ତା ତାହାକୁ କହିବା ।
ତେଣୁକରି ନବଋଷି ଧ୍ୟାନରେ ବସିଲେ
ନରପତି ହୃଦ ଚିନ୍ତା ସକଳ ଜାଣିଲେ ।
କୁରୁକ୍ଷେତ୍ରେ କୁରୁରାଜ ଅନ୍ନ ଛତ୍ର ଦେଲେ
ଏକଲକ୍ଷ ଆଠ ସହସ୍ର ବିପ୍ର ସନ୍ତ ଭୁଞ୍ଜିଲେ ।
ଅନ୍ନ ଛତ୍ରେ ଏକଲକ୍ଷ ଯେ ସ୍ଥାନ ମିଳନ୍ତି
ଛତିଶ ବର୍ଣ୍ଣର ଧାରି ନ ଇଚ୍ଛନ୍ତି ଜାତି ।
ଯେ ଯାହା ପାଇଲେ ତାହା ଘେନିଣ ଚଳିଲେ
ତେଣୁକରି କୁରୁକ୍ଷେତ୍ର ନାମ ବୋଲାଇଲେ ।
ଏମନ୍ତ ଦେଖି ନୃପତି ମନେ ଅଛି ଭାବ
ଉତ୍ତମ ସ୍ଥାନରେ ହାଟ ପେଣ୍ଠ ବସାଇବ ।
କୁରୁକ୍ଷେତ୍ର ପ୍ରାପ୍ତେ ମନେ କରିଛ ଧାରଣା
ଏମନ୍ତ ବିଚାର କରି କରିଛ ଭାବନା ।
ଆମ୍ଭେ ନବଋଷି ନବ କର୍ମ ଭିଆଇବା
ରାଜା ବାକ୍ୟେ ଯୁଗେଯୁଗେ କୀର୍ତ୍ତି ରଖାଇବା
ଅଗସ୍ତି ବୋଇଲେ ଆମ୍ଭେ କରାଇବା ହାଟ
ପୁଲସ୍ତ୍ୟ ବୋଇଲେ ଆମ୍ଭେ କରାଇବା ପେଣ୍ଠ
ଉଶନା ବୋଇଲେ ହରି ଧ୍ୱନି କରାଇବ
ଦେବ ଯାତ୍ରା କରିବାକୁ ଭୃଗୁଋଷି ଭାବ ।
ବ୍ରହ୍ମଜ୍ଞାନର ସଂହିତା ଗାର୍ଗବ ଭିଆଇ
ରାଜଦ୍ୱାରେ ନ୍ୟାୟ ଶାସ୍ତ୍ର ଗୋମନ୍ତ କରାଇ ।
ନାରଦ ବଚନେ ବିଭା ସମ୍ଭାର ବ୍ୟବସ୍ଥା
ରୋମାଞ୍ଚ ବାଣିଜ୍ୟ ଶାସ୍ତ୍ରେ ବୁଝାଇଲେ କଥା ।
ଚତୁର୍ଥ୍ୟ ସଂହିତା ଋଷି ଜନକ ଯେଭେଇ
ବ୍ୟାସଦେବ ଜୈମିନିଙ୍କୁ କହିଲେ ବୁଝାଇ ।
ଭବିଷ୍ୟ ପୁରାଣ କଲି ପ୍ରାକୃତେ ଲିଖନ
ଗଙ୍ଗାଧର ପାଣି କହେ ରଖ ନାରାୟଣ ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ପଞ୍ଚଦଶୋଽଧ୍ୟାୟଃ

—*—

## ଷୋଡ଼ଶ ଅଧ୍ୟାୟ

## ଅଗସ୍ତ୍ୟ, ପୁଲସ୍ତ୍ୟ, ଉଶନା ଏବଂ ଭୃଗୁମୁନିଙ୍କର କୁରୁକ୍ଷେତ୍ର ସମ୍ବନ୍ଧେ ଉପଦେଶ ପ୍ରଦାନ

ବ୍ୟାସଙ୍କ ପାଦ ଧରିଣ ବୋଲେ ଜଇମିନି
ଏଥିଅନ୍ତେ କିବା କୃତ୍ୟ କଲେ ନୃପମଣି ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
ନବଋଷି ବିଶ୍ୱରିଲେ ଏମନ୍ତ ହୃଦର ।
ତଦନ୍ତରେ ନବଋଷି କହନ୍ତି ରାଜାରେ
ଯାହା ପୁଚ୍ଛା କଲୁ ଶୁଣ ମନ ଆନନ୍ଦରେ ।
ଯେଉଁ କୀର୍ତ୍ତି କରାଇବୁ ନବଧା ପ୍ରକାର
କୁରୁକ୍ଷେତ୍ରର ଉପମା ଦେବେ ଏ କ୍ଷିତିର ।
ଆମ୍ଭେ ନବଋଷି ନବବିଧି କରାଇବୁ
ହୃଦରେ ବିଶ୍ୱର କରି ସମ୍ମତ ହୋଇବୁ ।
ରାଜା ଋଷିଙ୍କର ବାକ୍ୟ ପରମ ଆନନ୍ଦ
ପାଇ ସାର ବୁଦ୍ଧି ପାଞ୍ଚ ଲଭିଲ ବିନୋଦ ।
ଅଗସ୍ତି ରାଜାର ଆଗେ କହି ଧର୍ମବାଟ
ତୋ ଗ୍ରାମେ ବସାଅ ନୃପ ଏକଗୋଟି ହାଟ ।
ସୁସ୍ଥାନ ଦେଖିଣ ତାହା କରାଅ ନିର୍ମଳ
ଚଉପାଶେ ଥାଏ ଯେସ୍ନେ ସୁଧାସମ ଜଳ ।
ଚୂତ ଯେ କଣ୍ଟକି ବୃକ୍ଷ ଆବର ବକୁଳ
କଦମ୍ବ ଯେ ନାରିକେଳ ଖର୍ଜ୍ଜୁରି ତାଳ ।
ଶୁଭଦିନ ବିଚାରିଣ ସଂକଳ୍ପ କରିବ
ଗ୍ରାମ ନାମେ ମଣିପୁର ହାଟ ବସାଇବ ।
ଆଦ୍ୟ ବୈଶାଖମାସରେ ପଣ୍ଡିତ ବାସରେ
ପୁଷ୍ୟା ନାମରେ ନକ୍ଷତ୍ର ଚନ୍ଦ୍ର କର୍କଟରେ ।
ଗୁଆ ଦେଇ ବେପାରୀଙ୍କୁ କରିବ ବରଣ
ଡାକ ହୋଇଯିବ ରାଜ୍ୟେ ଦିଅନ୍ତେ ଘୋଷଣ
ଦହି ଦୁଗ୍ଧ ଛେନା ଖଣ୍ଡ ମଧୁ ଘୃତଯେତେ
ନାରିକେଳ ନାନା ଫଳ କଦଳୀ ସହିତେ ।
ସୁଗୁରୁ ମଧୁ ଲବଣ ବଦରୀ ଡାଳିମ୍ବ
କପିତ୍ଥ ଜେଉଟ ବେଲ ଟଙ୍କ ଜମ୍ବୁ ଆମ୍ବ ।
କଞ୍ଚା ପରିଆଦି ଯେତେ ବାଈଗଣ ସହିତେ
ଖଦି ମୁଦି ମାଳ ଆଉ ବସ୍ତ୍ରମାନ ଯେତେ ।
ଶାକ କନ୍ଦମୂଳ ଆଦି ନାନାବିଧ ଖଡ଼ା
ବିକ୍ରୟ କରିବେ ନେବେ ଯେ ଯାହାରଲୋଡ଼ା
ହରିଧ୍ୱନି ଚମକରେ ସର୍ବଜାତି ଥାଇ
କୁରୁକ୍ଷେତ୍ର ସମାନ ଏ ବାରଣ ନୁହଇ ।
ଅଗସ୍ତି ବଚନେ କ୍ଷିତି ମଧ୍ୟେ ହୋଇ ହାଟ
ଦେଶ ଘୋଷ ସ୍ଥାନେ ସ୍ଥାନେ ହୋଇବ ପ୍ରକଟ
ଶୁଣିଣ ନୃପତି ବହୁଁ ସନ୍ତୋଷ ଲଭିଲେ
ମନରେ ସଂକଳ୍ପ କରି ହାଟ ବସାଇଲେ ।
ଶୀରଙ୍ଗ ମନୁ ଅଗ୍ରତେ ପୁଲସ୍ତ୍ୟ କହନ୍ତି
ହୃଦୟରେ ଯାହା ଇଚ୍ଛା ଶୁଣ ନରପତି ।
ସର୍ବ କୀର୍ତ୍ତି ପରେ ଯେ ବାଟ ଅଟେ ବହୁଶ୍ରେଷ୍ଠ
ସୁପଥ ଦେଖିଣ ରାଜା ବସାଅ ହେ ପେଣ୍ଠ ।
ଗଙ୍ଗାଆଦି ଶ୍ରୀକ୍ଷେତ୍ର ରହସ୍ୟ ବୃନ୍ଦାବନ
ଯେଉଁ ପଥରେ ଯାଆନ୍ତି ସାଧୁ ସଜ୍ଜନ ।
ଧର୍ମ୍ମର ନିମନ୍ତେ ଧର୍ମଶାଳା ଗୃହକର
ସର୍ବ ଧର୍ମ୍ମେ ମନୋରମ ଚଉ ତୃଷ୍ଣା ହର ।
ପେଣ୍ଠରେ ରୋଷେଇଶାଳା ଆବର ପାନ୍ଥଶାଳା
ଏହିମତେ ସ୍ଥାନେ ସ୍ଥାନେ ଠାବମାନ କର ।
ଗତାଗତ ଜନମାନେ କରିବେ ରନ୍ଧନ
ଭୋଜନେ ସନ୍ତୁଷ୍ଟ ହେଲେ ଲଭିବ ସୁପୁଣ୍ୟ ।
ଶରୀର ତତ୍ତ୍ୱ କହିବା ଚଉ କର ସ୍ଥିର
ବ୍ରହ୍ମେ ବ୍ରହ୍ମନ୍ୟାସ ଜ୍ଞାନ ରସର ସାଗର ।
ମନକୁ ସଂଜାତ କରି ବ୍ରହ୍ମରନ୍ଧ୍ର ଦ୍ୱାରେ
ଅନ୍ନକୁ ଚଳାଇ ନେବ କଳ୍ପନା ଚଟୁରେ ।
ବ୍ରହ୍ମାଣ୍ଡ ହାଣ୍ଡିରେ ଶାନ୍ତ ଜଳ ପୂରାଇବ
ଇନ୍ଦ୍ରିନ୍ଧନ କରି ଚୁଲିହାର ଜାଳ ଦେବ ।
ପଚିଶ ପ୍ରକୃତି ଯେ ଛଡ଼ଣ ପରମଳ
ମନ ଦ୍ରବ୍ୟ କରି କର୍ମ୍ମେ କରାଇ ତଣ୍ଡୁଳ ।
ବିବେକ ଲବଣ କରି ବିଚପନ କର
ଚେତନା ପ୍ରେକ୍ଷଣ କରି ବସ୍ତ୍ରଅ ପତର ।

ସମତା ଦୃଷ୍ଟି ତୁଳସୀ ଓଁ କାରେ ଭୋଗ
ସତ୍ୟ ଶାନ୍ତି ଠାକୁରଙ୍କୁ କରାଅ ସଂଯୋଗ ।
ନୈବେଦ୍ୟର ଅନ୍ନେ ଏହା ଗ୍ରହଣ କରିବ
ମନରେ ଏମନ୍ତ ଶୁଦ୍ଧ ବୁଦ୍ଧି ସଜାଦେବ ।
ଏ ଅନ୍ନ ଖାଇଲେ ଯୁଗେଯୁଗେ ଅଜରାମର
ନୃପଆଗେ ପୁଲସ୍ତ୍ୟ ଯେ କହି ପେଣୁଥାର ।
ଛତିଶ ଜାତି ମିଳିଣ ରାଜପେଣ୍ଡ ପୂଥେ
କୁରୁକ୍ଷେତ୍ରରେ ସମାନ ବାରଣ କି ଏଥେ ।
ଏ କୀର୍ତ୍ତି କରାଅ ରାଜ୍ୟେ ସକଳ ଯେ କର
ଯୁଗ ଯୁଗକୁ କୀରତ୍ତି ରହିବ ତୋହର ।
ଉଶନାଋଷି ମିଳିଲେ ନୃପତି ଆଗର
ଏକଛି କୀରତ୍ତି ଅଛୁ ସଂସାରରେ ସାର ।
ପୂର୍ବ ବାସନାରେ ଯେବେ କରନ୍ତି କୀରତ୍ତି
କଳ୍ପଜନ ଯୁଗେଯୁଗେ ସମାବେ ଥାଆନ୍ତି ।
ଏଥର ବଧାନ ନୃପ ମନ ଦେଇ ଶୁଣ
ଯେ ନାମ ଶ୍ରବଣେ ପାପ ହୁଅଇ ମୋଚନ ।
ଅଷ୍ଟାଦଶ ପୁରାଣର ପଞ୍ଚମ ପୁରାଣ ।
ଶ୍ରୀଭାଗବତ ବୋଲିଣ ଅଟେ ତାର ନାମ ।
ହରିନାମେ ହରି ହାଟ ସୁସ୍ଥାନେ କରିବ
ସପ୍ତଦିନେ ସପ୍ତାଙ୍ଗ ଯେ ନଷ୍ଟେ ବଢ଼ାଇବ ।
ବିପ୍ରର ବେଦର ପ୍ରାପ୍ତେ ଗୋଳ ଷୋଳଜଣ
ଜଣେ ଜଣେ ଗ୍ରନ୍ଥ ଦେଇ ଦେବପାଦ୍ୟାୟନ ।
ଏକମୁଖ ହୋଇ ସର୍ବେ କରିବେ ଗାୟନ
ବିଷ୍ଣୁ ଛତ ବୈକୁଣ୍ଠ ସତ୍ୟର ଭୁବନ ।
ବ୍ରହ୍ମଦର୍ଶୀ ଜନମାନେ କର୍ଣ୍ଣେ ଡେରିଥିବେ
ଯେ ଯାହା ଇଚ୍ଛାରେ ନାମଶ୍ରୁତିରେ ଭରିବେ
ଅବାରଣ ଭୂମି ଯେହୁ ବାରଣ ନ ଥାଇ
ଶାରଙ୍ଗନୃପଙ୍କୁ ଅଗ୍ରତେ ଉଶନା କହଇ ।
କୁରୁକ୍ଷେତ୍ରର ସମାନ ହରିହାଟ ଜାଣି
ଋଷି ବଚନେ ସନ୍ତୁଷ୍ଟ ନୃପଶିଖାମଣି ।
ଭୃଗୁମୁନି ବୋଲେଛୁ ଶୁଣ ରାଜବଳା
ଯାହାମୁଁ କହିବ ତାହା ହୃଦପଦ୍ମେ ଗଳା ।
ସର୍ବ ଯାହାମାନଙ୍କରେ ଶ୍ରେଷ୍ଠ ଯେହୁହୋଇ
ମୂଳାଧାରେ ବଶୁଦ୍ଧାମ୍ବା ଇତିହାସେ କହି ।
କୁମ୍ଭମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥି
ଶ୍ରବଣା ନାମେ ଋକ୍ଷ ମୃଗେ ଚନ୍ଦ୍ରସ୍ଥିତି ।
ଶିବଚତୁର୍ଦ୍ଦଶୀ ବ୍ରତ କର ଅବଧାନ
ସ୍ଥାପିଣ ସୁବର୍ଣ୍ଣ ଲିଙ୍ଗ କେଲି ଆରୋପଣ ।
ମନ୍ତ୍ରପେ ବଜାୟୁ କରି ବେଦ ବିଧି ଯେବ
ମାତୃକାନ୍ୟାସରେ ଜୀବନ୍ୟାସ ପଟ୍ଟମାଣି ।
ଏବ୍ରତରଫଳ ଶ୍ରୁତି ଅଛଇ ଅପାର
ରାତ୍ରେ ଉଜାଗର ହୋଇ ଜାଳିବ ଜାଗର ।
ଗଣ୍ଡୂଷ ମାତ୍ରକ ଜଳ ଶିବଉପାସକ
ଗ୍ରହଣ କରିବ ମନେ ସ୍ମରି ଚନ୍ଦ୍ରଶିଖ ।
ଏହି ବ୍ରତ କରାଅ ହେ ନୃପ ଶିରୋମଣି
କୁରୁକ୍ଷେତ୍ରଦେବ ଯାହା ସମ ଏହା ଜାଣି ।
ଯୁଗେ ଯୁଗେ ତୁମ୍ଭରତି କୀର୍ତ୍ତି ରହିଥିବ
ପାତାଳଭେଦୀ ଅଟନ୍ତି ନାମ ସଦାଶିବ ।
ଭବିଷ୍ୟ ପୁରାଣ ଏହା ସାରସ୍ୱତ କହି
ବ୍ୟାସଦେବ ଜୈମିନଙ୍କି କହିଲେ ମଣାଇ ।
ଗଙ୍ଗାଧରପାଣି ଭାବ ତୋହର ଚରଣ
ବିଷ୍ଣୁର ମହିମା ମୁଖେ କରଇ ଗାୟନ ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନ
ସମ୍ବାଦେ ନାମ ଷୋଡ଼ଶୋଽଧ୍ୟାୟ

—*—

## ସପ୍ତଦଶ ଅଧ୍ୟାୟ

## ଗାର୍ଗବ, ଗୋମନ୍ତ, ନାରଦ, ନୈମାଞ୍ଚ ଏବଂ ଜନକ ପାଞ୍ଚ ଋଷିଙ୍କର କୁରୁକ୍ଷେତ୍ର ସମ୍ବନ୍ଧରେ ଉପଦେଶ ପ୍ରଦାନ

ଜୈମିନରୁବାଚ

ଜଇମିନ ବୋଲୁଛନ୍ତି ବ୍ୟାସ ପାଦଧରି
ଏଥୁ ଅନନ୍ତରେ ଚରିତ କହ ତପସ୍ୱୀ ।
ବ୍ୟାସଦେବ ଉବାଚ
ବ୍ୟାସମହର୍ଷି ବୋଲନ୍ତି ଶୁଣମୁନିବର
ଶାରଙ୍ଗ ନୃପତି ଆଗେ ଗାର୍ଗବ ଉତ୍ତର ।

ବୋଲନ୍ତି ସେ ଋଷିବର ଶୁଣ ନୃପସୁତ
ସର୍ବ ଧର୍ମପଥରେ ଶ୍ରେଷ୍ଠ ମୌଷ୍ଠବ ଚରିତ ।
ଯେମାନେ ସ୍ୱଧର୍ମରେ ରତ ସର୍ବଦା ଅଛନ୍ତି
ତମୋଗୁଣ ଦୂରକରି ସମ ତାଙ୍କ ଗତି ।
ପଦାର୍ଥ ଅଣାଇ ନୃପ ଭଣ୍ଡାର ଭେଇବୁ
ମହୋତ୍ସବ କର୍ମଫଳେ ଯଶ ତୁ ଲଭିବୁ ।
ପାପଜ ସମ୍ଭବେ ଯେତେ ଦୁଷ୍କୃତାଦିମାନ
ଜ୍ଞାନଜ୍ଞାନକୃତ ଦୋଷ ହୁଅଇ ମୋଚନ ।
ଗୋଷ୍ଠି କରି ଧର୍ମଶାସ୍ତ୍ର କରିବ ଗାୟନ
ଭଣ୍ଡାର ପାକ ସମ୍ପୂର୍ଣ୍ଣ ବସ୍ତୁରେ ଅର୍ପଣ ।
କୁରୁକ୍ଷେତ୍ର କରାଇବ ଜାତି ନ ବିଚାରି
ଯେ ବାରଣ କରେ ବ୍ୟାଧି ଜନ୍ମଇ ତାହାରି ।
ଏହି କର୍ମ ଦୂଷଣୀୟ ଯେମାନେ କହନ୍ତି
ଚୌରାଶୀ କୁଣ୍ଡରେ ଦଣ୍ଡ ସେମାନେ ଲଭନ୍ତି ।
ମହୋତ୍ସବ ବିଧି ଯେବେ କରୁ ନୃପବର
ଯୁଗ ଯୁଗାନ୍ତର କୀର୍ତ୍ତି ରହିବ ତୋହର ।
ମନଜ୍ଞାନେ ପୂଜିବୁ ତୁ ଅଜ୍ଞାନକୁ ତେଜ
ସୁଜ୍ଞାନ ପଥରେ ଚିତ୍ତ ହୃଦେ ଥିବୁ ହେଜ ।
ଗୋମନ୍ତ ବୋଇଲେ ରାଜା ଶୁଣ ଧୀରମନେ
କରାଇବା କୀର୍ତ୍ତି ପଥ ଯେନ ତୁ ସୁଜ୍ଞାନେ ।
ସର୍ବଶ୍ରେଷ୍ଠତର ବସ ଅଟେ ରାଜଦ୍ୱାର
ଲକ୍ଷ୍ମୀଧନ ଯେନ ତହିଁ ଥାନ୍ତି ନିରନ୍ତର ।
ସେ ଦ୍ୱାରେ ପରମ ଗତି ଅବାରଣ ଭୂମି
ନ୍ୟାୟେ କୁରୁକ୍ଷେତ୍ର ସମ ରାଜସଭା ଜାଣି ।
ତୁହି ଯେ ଶାରଙ୍ଗ ମନୁ ନୃପତି ବୋଲାଉ
ଅବାରଣ ତୋର ସଭା ଆଜ ହନୁ ହେଉ ।
ସାଲ ସମ୍ବତ୍ସର ପୂଜା ଅଙ୍କ ତୁ କରିବୁ
ଯୁଗ ଯୁଗାନ୍ତରେ ତୁହି କୀର୍ତ୍ତି ରଖାଇବୁ ।
ଏଥୁଅନ୍ତରେ ମିଳିଲେ ନାରଦ ତୋପାଇଁ
ବୋଇଲେ ହେ ନୃପବର ଶୁଣ ମନଦେଇ ।
ତୁ ଯାହା ବୋଇଲୁ ଦେଶ କୀର୍ତ୍ତି ରଖିବାକୁ
ଯେମନ୍ତେ ରହିବ ନାମ ଯୁଗ ଯୁଗାନ୍ତକୁ ।
ସେ ଯାହାର ମନୋମତ ପତି ପତ୍ନୀ ହୋଇ
ପ୍ରକାଶିବା ବେଦ ବିଦ୍ୟା ବ୍ରହ୍ମା ହସ୍ତେ ଦେଇ
ବିବାହ ହୋଇବେ ସର୍ବେ ବେଦର ବିଧାନେ
କନ୍ୟା ପିତା ସମର୍ପିବ ଆନନ୍ଦିତ ମନେ ।
ଯେତେକ ବିଧାନମାନ ନାରଦ କହିଲେ
ବରଯାତ୍ରୀ ପଣେ ସୈନ୍ୟ ଗଣନା ନଗଲେ ।
ନ୍ୟାୟ କୁରୁକ୍ଷେତ୍ର ସମ ବିବାହ ଉତ୍ସବ
ସେ ସ୍ଥାନରେ ନ ଥାଏଟି ଜାତିଶ୍ୱର ଭେଦ ।
ରୋମାଞ୍ଚ ବୋଇଲେ ତୁମ୍ଭେ ଶୁଣ ନୃପସାଇଁ
କୀର୍ତ୍ତିର ବିଧାନ ବାକ୍ୟ ବାଣିଜ୍ୟ ବୋଲାଇ ।
ଯେଉଁସ୍ଥାନେ ତୁଣ୍ଡି ହୋନ୍ତି ନାନାଜାତି ହୋଇ
କୁରୁକ୍ଷେତ୍ର ସମ ସେହୁ ବାରଣ ନୁହଇ ।
ସପ୍ତଜନ ବିଲୋକନେ ହରେ ସର୍ବ ପାପ
ବହୁ କ୍ଲେଶ ଦୂର ହୁଏ ନ ଲାଗଇ ତାପ ।
ରୋମାଞ୍ଚଋଷି ବଚନେ ଶାରଙ୍ଗ ନୃପତି
ବାଣିଜ୍ୟ କରିବାପାଇଁ ଦେଲେ ଅନୁମତି ।
ଜନକ ଶାରଙ୍ଗ ଆଗେ କହିଲେ ବଚନ
ଇତିହାସ ଦୃଢ଼ ବାକ୍ୟ ଅନେ୍ୟ ପୁରାତନ ।
ନବମୁନ ଯେଉଁ ଶାସ୍ତ୍ରମାନ ପ୍ରକାଶିଲେ
ଜୀବଙ୍କର ଉପକାରେ ହୋଇ ଗୁରୁତୁଲ୍ୟେ ।
ନାନା ଜାତି ମିଳି ଚୌରପଣ ଆଚରନ୍ତି
କୁରୁକ୍ଷେତ୍ର ସମ ନ୍ୟାୟ ନ ଇଚ୍ଛନ୍ତି ଜାତି ।
ଏକପାତ୍ରେ ବିଧିମତେ କରନ୍ତି ଅଶନ
ଯେମନ୍ତ କ ନାବେ ଅଶ୍ୱେ ନ ଥାଇ ବାରଣ ।
କାଷ୍ଠ ତରୁ ତୃଣ ଗଜପୃଷ୍ଠେ ନ ବାରନ୍ତି
କୁରୁକ୍ଷେତ୍ରର ସମାନେ ଏମାନେ ବୋଲନ୍ତି ।
ନବଋଷିଠାରୁ ଶୁଣି ଶାରଙ୍ଗ ରାଜନ
ପାଦେ ପଡ଼ି ବାରମ୍ବାର କଲେକ ପ୍ରଣାମ ।
ନୈମିଷାରଣ୍ୟକୁ ନବଋଷି ଚଳିଗଲେ
ସର୍ବ ଦ୍ୱିଜମାନେ ତହୁଁ ଆଶ୍ରମେ ଗମିଲେ ।
ନବଋଷି ବାକ୍ୟ ପାଳି ଶାରଙ୍ଗ ନୃପତି
ବଙ୍ଗଦେଶେ ଭୋଗ କଲେ ଅଶେଷ ବିଭୂତି ।
କଳିଙ୍ଗଦେଶେ ରାଜା ହରିବଂଶୀ ହୋଇ
ବୀରକଶୋର ବୋଲଣ ନାମ ସେ ବୋଲାଇ ।
ସୁଖେ ସେ ପାଳଇ ଦେଶ ବାରିଧିର କୂଳେ
ପ୍ରଜାମାନଙ୍କର ସୁଖ ଚିନ୍ତେ ନିରନ୍ତରେ ।
ଋତୁଜାଣି ଇନ୍ଦ୍ର ଦେଶେ ଜଳ ବରଷଇ
ଶସ୍ୟଲଭି ପ୍ରଜାମାନେ ସୁଖେ ଥାନ୍ତି ରହି ।
ସହସ୍ରେ ପୁତ୍ର ହୋଇ କଳିର ରାଜନ
ଦ୍ୱିଜଠାରୁ ପୁତ୍ରେ ତାଙ୍କୁ କରିବେ ଦଳନ ।

ବଳଭଦ୍ର ରୂପରେ ବିଜେ ଶ୍ରୀନୀଳମାଧବ
ଘୋରକଳି ଭୁଆଇବେ ନୀଚେ ବହୁ ଗର୍ବ ।
ସୁପଥକୁ ଛାଡ଼ି କୁପଥରେ ଗତାଗତ
ଅତିଅନ୍ୟାୟରେ ଲୁଣ୍ଠ କରାଇବେ ହିତ ।
ବୃହସ୍ପତି ନକ୍ଷତ୍ରେ ଶନି ହେବେ ରାଜା
ଭକ୍ତକୁଳ ହେବେ ନ୍ୟୁନ ମିଛ ପାଇ ପୂଜା ।
ମାନ୍ୟଜନେ ନ ମାନିବେ ଅପକର୍ମ କରି
ବେଦବାକ୍ୟ ନ ମାନିବେ ପାପ ନ ବିଚାରି ।
ସମ ଧର୍ମ ନ ବିଚାରି ଶସ୍ୟ ଅଧିପତି
ପୀଡ଼ିବେ ସୁପନ୍ଥ ମାର୍ଗେ ନ ପାରିବେ ଚେତି ।
କବି ବଂଶୀ କନୋଜ ଦେଶର ରାଜନ
ଦ୍ରାବିଡ଼େଶ୍ୱର ବୋଲଣ ତାହାଙ୍କର ନାମ ।
ପ୍ରଜାଙ୍କ ବିକଳ ହୃଦେ ନ ପାରିଲି ସହି
କରଭର ମୁଖେହର ନାମ ଘୋଷୁଥାଇ ।
ଜଗତ ଈଶ୍ୱର ପ୍ରଭୋ ତୁମ୍ଭେ ଆଦିମୂଳ
ନମୋନମ ଆଦିମୂଳ କରିଥ କୁଶଳ ।
ନବଶତ ପୁରୁଷ ସେ ହୋଇବେ ରାଜନ
ଧର୍ମାଧିପ ପଦେ ସେହୁ ହେବେ ଧାରାସନ ।
ଶାରଙ୍ଗ ପର୍ବତେ ଦିନେ ବିଜେ କରିଥିବ
ଦେବଗଣଙ୍କୁ ସାଇଣ ଦର୍ଶନ କରିବ ।
ଦେଖି ଦେବଗଣ ସେହୁ ବହିବ ବିରାଗ
ସକଳସମ୍ପଦ ଛାଡ଼ି ଦେଶ କରି ତ୍ୟାଗ ।
ସପ୍ତ ସମୁଦ୍ରରେ ମେରୁ ପୃଷ୍ଠରେ ରହିଣ
ବିବୁଧାଦିମାନଙ୍କୁ ସେ କରିଣ ଦର୍ଶନ ।
ମାୟା ମୋହ ଦୂର କରି ପଦ୍ମ କଳ୍ପ ଅନ୍ତେ
ବ୍ରହ୍ମକଳ୍ପ ଶେଷ ଜାଣି ଚିନ୍ତି ହୃଦଗତେ ।
ଚେତ୍ରଗଣ୍ଡା ଯୁଗରେ ସୁଧର୍ମା ସଭାରେ
ପୁଣିଜାତ ହୋଇଲେ ସେ ସିଂହଳ ଦ୍ୱୀପରେ
ରାଧାକାନ୍ତ ବୋଲନ୍ତି ସାଧବ ଗୃହରେ
ତାହାର ପତ୍ନୀ ସୁଦେବୀ ଜାତ ତା ଉଦରେ ।
ବୈଶାଖମାସ ଶୁକ୍ଳପକ୍ଷ ଦଶମୀ ଯେ ତିଥି,
ଶୀବବାର ଦିବସର ବେଳ ନବଘଡ଼ି ।
ରେବତୀ ନକ୍ଷ୍ୟ ସେ ଦିନ ଚନ୍ଦ୍ର ମୀନେ ଥାଇ
ନବଗ୍ରହ ଶୁଭ ଘରେ ଛନ୍ତି ସ୍ଥିର ହୋଇ ।
ଜାତକର୍ମ କରାଇଲେ ବେଦ ଅନୁକ୍ରମେ
ପଞ୍ଚୁଆତି ଷଠୀଘର ଉଠିଆରି ଦିନେ ।
ଦଣ୍ଡଧାର ବେଦପକ୍ଷ ଶକାଂଶ ଅଙ୍କେ
ଶୁଭେ ଜନମ ନାମ ପୁନ ବଡ଼ଇ ନିଷ୍ଠ କେ ।
ଅକଳିତ ସମ୍ପଦ ଯେ ଅମୋଘ ଭଣ୍ଡାର
ହାଣ୍ଡି ଓଠ ଖଗ ମୃଗ ପିକ ଯେ ମୟୂର ।
ନାନାଜୀବ ପାଳିବାରେ ଚିତ୍ତେ ଶ୍ରଦ୍ଧାଥାଇ
ବ୍ୟାସଦେବ ଜୈମିନିଙ୍କୁ କହିଲେ ବୁଝାଇ ।
ଭବିଷ୍ୟପୁରାଣେ ସପ୍ତଦଶ ଅଧ୍ୟାୟର
ଗଙ୍ଗାଧର ପାଣିକୁ ହେ ରଖ ଚକ୍ରଧର ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ

—*—

## ଅଷ୍ଟାଦଶ ଅଧ୍ୟାୟ

### କଳିଙ୍ଗଦେଶ ନରପତି ଗଙ୍ଗାଧର ରାଜାର ପୁତ୍ର ଜଗନ୍ନାଥର ଜନ୍ମ ବିବରଣାଦି

ଜୈମିନିରୁବାଚ

ଜୈମିନି ବୋଲନ୍ତି ବ୍ୟାସଦେବଙ୍କ ଆଗରେ
ସିଂହଳ ଦେଶେ ସାଧବ କେଉଁ କୃତ୍ୟ କଲେ ।
ଏଥିର ଚରିତ ମୋତେ କହ ତପୋବନ୍ତ
ତବ ମୁଖରୁ ଶୁଣିଲେ ହୋଇବ ପବିତ୍ର ।

ବ୍ୟାସ ଦେବ ଉବାଚ

ବ୍ୟାସଦେବ ବୋଲନ୍ତି ହେ ଶୁଣ ମୁନିବର
ଯାହା ପୁଚ୍ଛା କଲୁ ଶୁଣ ତହିଁ କର ସ୍ଥିର ।
କ୍ରମେ କ୍ରମେ ହେଲା ତାର ଦ୍ୱାଦଶବର୍ଷର
ଜଗନ୍ନାଥ ନାମ ଅଟେ ସାଧବ କୁମର ।
ଅକଳିତ ଧନ ତାର କଳନା ନ ଯାଇ
ଦିନକୁ ଦିନ ସମ୍ପତ୍ତି ବୃଦ୍ଧି ପ୍ରାପ୍ତ ହୋଇ ।
ସିଂହଳ ଦେଶରେ ତାର ସୁଖ୍ୟାତି ଉଠିଲା
କାମାକ୍ଷୀ ଦେବୀଙ୍କୁ ଦିନେ ପୂଜିବାକୁ ଗଲା ।
ଉପଚାର ଘେନିଣ ସେ ପୂଜୁ ଦୁର୍ଗାଦେବୀ
ପ୍ରସନ୍ନ ହୋଇଲେ ତାଙ୍କ ପ୍ରତି ଦୟା ଭାବି ।

ମାଗ ଯାହା ଇଚ୍ଛା ମୁହିଁ ଦେବ ତୋତେବର
ପ୍ରସନ୍ନ ହୋଇଲି ତୋତେ ଅଖିଳ କୁମର ।
ଶୁଣିଣ ବୋଇଲା ତହୁଁ ସାଧବ କୁମର
ଯେବାଇଚ୍ଛା ଦିଅ ବର ଅଛଇ ମନର ।
କୁମର ବଚନ ଶୁଣି କାମାକ୍ଷୀ ବୋଲନ୍ତି
ଯେ ତୋହର ପତ୍ନୀ ହେବ ଶୁଣ ଦେଇ ମତି
ତୋହର ପତ୍ନୀ ନିବାସ ସଦାଶିବ ଗ୍ରାମ
ସଦାନନ୍ଦ ବୋଲି ସାଧୁ ବଡ଼ଇ ସୁଜ୍ଞାନ ।
ନବଲକ୍ଷ ଦନ୍ତୀ ଯେ ପଦାତି ଖର୍ବ ଖର୍ବ
ସୁବର୍ଣ୍ଣ ଭଣ୍ଡାର ସର୍ବ ଇଷ୍ଟ ସଦାଶିବ ।
ଜଳଛତ୍ର ଅନ୍ନଦାନ ଦିଏ ନିତ୍ୟ ପୁରେ
ବିପ୍ର ବୈଷ୍ଣବଜନ ଦେଖି ସେବଇ ଯତ୍ନରେ ।
ସର୍ବ ଧର୍ମ କରେ ସେହୁ ସଂକଳ୍ପ କରିଣ
ପୂର୍ବ ଦୁଷ୍କୃତରୁ ତାର ନାହିଁ ଯେ ନନ୍ଦନ ।
ରସବତୀ ନାୟିକା ତା ଅଟଇ ସୁମତି
ତାଠାରୁ ଜନ୍ମିଛି କନ୍ୟା ନାମ ହୀରାବତୀ ।
ଷୋଡ଼ଶ ବୟସୀ ସେହୁ ଅଟଇ ଯୁବତୀ
ତୋହର ନାୟିକା ସେହି ତୁ ତାହାର ପତି ।
ସହସ୍ର ଯୋଜନ ପଥ ସମୁଦ୍ରର ପାରି
ପୁଷ୍କରଦ୍ୱୀପେ ପିତାତାର ବରଅଛି ବରି ।
ତୁ ଗଲେ କନ୍ୟା ତାହାକୁ ନ ହୋଇବ ବଶ
ତୋତେ ବରଣ କରିବ ଦେଖିଣ ତୋବେଶ
ତାହାକୁ ବଶ ହୋଇଲେ ଶୁଣରେ କୁମର
ପାଇବୁ ଅଶେଷ ସୁଖ ରତନ ଭଣ୍ଡାର ।
ସ୍ୱର୍ଣ୍ଣାଦି ସହିତ କନ୍ୟା ଯଉତୁକ ଦେବ
ଅଷ୍ଟଗିରି ପର୍ବତ ଯେ ତୋହର ହୋଇବ ।
ଶୁଣିଣ କୁମରମଣି ଲଭିଲା ହରଷ
କେମନ୍ତ ଯିବଇଁ ମୁହିଁ ଏତେ ଦୂର ଦେଶ ।
କୁମର ବଚନେ ମାତା ବୋଲନ୍ତି ବଚନ
ଅତିଥି ରୂପରେ ତୁହି କରିବୁ ଗମନ ।
ପଥ କଢ଼ାଇଣ ତୋତେ ମୁହିଁ ଘେନିଯିବି
ସଦାନନ୍ଦର ଗ୍ରାମକୁ ପଥ କହିଦେବି ।
ଏହା ଶୁଣିଣ କୁମର ବାହୁଡ଼ି ଅଇଲା
ଆସନ ଶୟନ ବନ୍ଧ ପରିଚୟେ ମଣିଲା ।
ନିଦ୍ରା ନ ମାଡ଼ଇ ତାକୁ ବେନି ନୟନରେ
କେବଳ ମତି ରହିଲା ସଉଦାଗରୀ ଠାରେ ।

ଆରଦିନ ପାହିଥାଉଁ ବାହାର ହୋଇଲା
ଗ୍ରାମର ଉପାନ୍ତ ପଟେ ଯାଇଣ ବସିଲା ।
ଦ୍ୱିଜରୂପ ହୋଇ ଦୁର୍ଗା ତା ପାଶେ ମିଳିଲେ
ସଦାନନ୍ଦର ଗ୍ରାମକୁ ପଥ କହିଦେଲେ ।
ଗ୍ରାମରେ ପଶି କୁମର ବିଚାର କରଇ
ମାଳାକାର ଗୃହଠାରେ ପ୍ରବେଶିଲା ଯାଇଁ ।
ମାଲୁଣୀର ଧର୍ମପୁତ୍ର କୁମର ହୋଇଲା
ସଦାନନ୍ଦ ସାଧୁ କଥା ସକଳ କହିଲା ।
ହୀରାବତୀ କଥାସବୁ କହେ ତା ଆଗର
ମାଲୁଣୀ ବୋଇଲା ତୁହି ଶୁଣରେ କୁମର ।
ମାତାପିତା କେ ତୋହର କେଉଁଦେଶେ ଘର
କେତେଦୂର ଅଟେ ପଥ କିବା ବ୍ୟବହାର ।
ମାଲୁଣୀବଚନେ କହି ସାଧବ ନନ୍ଦନ
ସିଂହଳ ଦେଶରେ ଘର ପିତା ମହାଜନ ।
ରାଧାକାନ୍ତ ବୋଲି ଅଟେ ଜନକର ନାମ
ସୁଦେବୀ ଅଟଇ ମାତା ମୁଁ ତାର ନନ୍ଦନ ।
ଜଗନ୍ନାଥ ମୋର ନାମ କାମାକ୍ଷୀ ସେବିଲି
ତାହାଙ୍କର ଆଜ୍ଞା ମାନି ଏଥକୁ ଅଇଲି ।
ଯେବେ ମୋତେ କୃପା କରିପାରୁ ଧର୍ମ-ମାତ
ହୀରାବତୀ ପାଶେ ମୋର ଦିଅ ନେଇ ପତ୍ର ।
ମୋହର ଆସିବା ତାକୁ କହିବୁ ତୁ ଯାଇ
ମୋହ ଆସିବାକୁ ସେହୁ ଅଛି ବାଟ ଚାହିଁ ।
କୁମର ବଚନ ଶୁଣି ମାଲୁଣୀ ହରଷ
ଲେଖା ନେଇ ଦେବ ମୁହିଁ ହୀରାବତୀ-ପାଶ ।
ମନରେ ଚିନ୍ତା କରିଣ ଲେଖିଲା କୁମର
ଆଦି ଅକ୍ଷରୁ ଜାଣିବ ଚତୁର୍ଦ୍ଦଶାକ୍ଷର ।
ମୋହର ମନ ଅଛଇ କେତକୀର ଫୁଲେ
ତେମନ୍ତ ସୁବାସ ଅଛି ତୋହର ଶରୀରେ ।
ତୁଳସୀର ମାଳାକଣ୍ଠେ ଭୂଷିତ ଅନନ୍ତ
ନବତନ ଯୁବା ନାରୀ ମୋହର ତେମନ୍ତ ।
ଦେଖି ନାହିଁ ତୋତେ ମୋର ଏ ବେନିନୟନ
ଲେଖିଲଇଁ ପତ୍ର ମୁହିଁ ହୋଇଣ ଅଧୀନ ।
ଭେଟିଲେ ନୟନ ମୋର ପବିତ୍ର ହୋଇବ
ଚମକ ସ୍ୱରୂପୀ ତୁହି ଘେନ ମୋର ଭାବ ।
ହତଶିରୀ ହୋଇଅଛି କର ମୋତେ ରକ୍ଷା
ରାଜା କରାଇଣ ମୋର ପୂରା ମନୋବାଞ୍ଛା ।

ଇତର ନମଣ ମୋତେ ମୁଁ ତୋର ସଙ୍ଗାତ
ବିପଦେ ମୁଁ ଆସିଅଛି ବହୁ ଦୂର ପଥ ।
ଘଟର ଈଶ୍ୱର ନାମେ କାମାକ୍ଷୀର ପାଦେ
ଟଳ ଟଳ ହୋଇ ଯାଏ ମନ କାମାର୍ତ୍ତବେ ।
ସ୍ୱଚ୍ଛ ମନରେ କହିଲା କହିବୁ ବିସ୍ତର
ଏଥକୁ ମୋହର ସାହା ନନ୍ତ ଦିନକର ।
ଗୁଣାକର ଦେଶେ ବାସ ସିଂହଳ ଦ୍ୱୀପର
ଋଷିଙ୍କ ବଂଶରେ ସାଧୁ ମୁଁ ତାର କୁମର ।
ପିତା ନାମ ରାଧାକାନ୍ତ ମୋ ମାତା ସୁଦେବୀ
ଆସିଅଛି ଉଦବେଗେ ତୋର ରୂପ ସେବି ।
ଆଶାଅଛି ଦରଶନେ ଏଥିରୁ ଜାଣିବ
ନଳିନୀକୁ ଦେଖି ମନେ ହୁଏ ଯେଉଁ ଭାବ ।
ନତନ ଘରକୁ ଆଶା ଚାତକ କରଇ
ହର୍ଷ ମୁଖ ଦେଖା ତୋର ମୋର ପ୍ରାଣସଖୀ ।
ଇତରେ ରତ ମୁଁ ନୋହେଁ ଲପନ ଦର୍ଶନ
କଳାମେଘେ ଯେହ୍ନେ ବିଦ୍ୟୁ ତେସନ ମୋ ମନ
ପଲକେ ନ ଯାରେ ନିଦ୍ରା ନୟନ ମୋହର
ଆତ୍ମା ସନ୍ତୋଷ ଲଭିବ ପାଇ ସମାଚାର ।
ଆଦ୍ୟ ଚତୁର୍ଦ୍ଦଶାକ୍ଷର ହେଜ ନାଗବର
ଲେଖା ଲେଖି ଦେଲେ ନେଇ ମାଲୁଣି ହସ୍ତର ।
ଫୁଲ ଘେନିଣ ମାଲୁଣି ସଧୀରେ ଚଳଇ
ନ ଶୁଣି ସେ ହିରାବତୀ କୁପିତ ହୁଅଇ ।
ଏମନ୍ତ ବିସ୍ମିତ ବୁଢ଼ୀ ସଧିରେ ଚଳିଲା
ହୀରାବତୀ କରେ ନେଇ ପୁଷ୍ପଲେଖା ଦେଲା ।
ପୁଷ୍ପ ପେଇ ଶିରରେ ଯେନନ୍ତେ ନାଗବର
ଦେଖିଲା ବିଚିତ୍ର ପତ୍ର ପୁଷ୍ପର ଭିତର ।
ସଖୀଗଣ ମେଳୁ ଉଠି ଗୋପନେ ପଢ଼ିଲା
ନାରଦ ବଚନ ତହୁଁ ହୃଦରେ ଗୁଣିଲା ।
କି ବୁଦ୍ଧି କରିବ ମୋତେ ବୁଦ୍ଧି ଦିଶୁନାହିଁ
ପ୍ଲକ୍ଷଦ୍ୱୀପେ ପିତା ମୋର ବର ବାଛଇ ।
ପିତା ମାତା ବଚନ ମୁଁ ଏଡ଼ିବ କେମନ୍ତେ
ଶାସ୍ତ୍ରେ ପ୍ରତିବନ୍ଧ ଅଛି ନୁହଇ ଯୁକତେ ।
ପିତା ମାତାଙ୍କ ବଚନ ଏଡ଼ନ୍ତି ଯେ ପ୍ରାଣୀ
ଇହକୁଳ ପରକୁଳ ନ ପାରନ୍ତି ଜାଣି ।
ଆଶାକରି ଆସିଅଛି ସାଧୁର କୁମର
ପିତା ମାତା ତେଜ ଆସିଅଛି ବହୁଦୂର
ଏହାଙ୍କୁ ନିରାଶ କଲେ ହରାଇବ ପ୍ରାଣ
ଜୀବହତ୍ୟା-ଦୋଷ ମୁହିଁ ବହିବ କାରଣ ।
କାଲି ଅଧିବାସ ବିଭା ଆରମ୍ଭନ ହୋଇ
ଯେ ଯାହାର ନାଗ ତାକୁ ବିଭା ଯେ ଘଟାଇ ।
କାଲି ଅଧିବାସ ଦିବ ସମୁଦ୍ର ସ୍ନାହାନେ
ଦେଖିବି ସାଧବ ପୁଅ ମୋ ବେନି ନୟନେ ।
ଯାହା କର୍ମେ ବିଭା ମୋର ଲେଖିଣ ଅଛଇ
ଆନକରି ନ ପାରିବେ ବ୍ରହ୍ମାଣ୍ଡ ଗୋସାଇଁ ।
ଯାଅ ବୁଢ଼ୀ ସାଧୁ ପୁଏ କହିବୁ ଏମନ୍ତ
ସମୁଦ୍ର ସ୍ନାନକୁ ଗଲେ ହେବ ମୁହିଁ ଭେଟ ।
ବୁଢ଼ୀ ଶୁଣି ନିଜବାସେ ବାହୁଡ଼ି ଚଳଇ
ସାଧୁପୁଅ ଆଗେ ହୀରାବତୀ ବାକ୍ୟ କହି ।
ଶୁଣିକରି ମୂର୍ଚ୍ଛାଗଲେ ଅଳିକ କୁମର
ଏତେଡ଼ ହୀନ କର୍ମ ମୁଁ ଅଇଲି ଏତେଦୂର ।
ଆସିବାର ଏତେ ଦୁଃଖ ବିଫଳ ହୋଇଲା
ତେବେ ସେ କାମାକ୍ଷୀ ଦେବୀ ଦୟା ନ ବହିଲା
ଦୁଃଖିତ ହୋଇଣ ସେହୁ ଉପବାସେ ଶୋଇ
ମନ ଛନ୍ନ ଛନ୍ନ ଚିତ୍ତ ଚଞ୍ଚଳ ହୁଅଇ ।
ନିଶି ଶେଷରେ ଉଦୟ ହେଲେ ଦିନକର
ନିତ୍ୟକର୍ମ ଶେଷକଲା ସାଧୁର କୁମର ।
ସଦାନନ୍ଦ ଗ୍ରାମେ ହୁଏ ମଙ୍ଗଳ ଉତ୍ସବ
ଗୀତ ଭୁରୀ ଭେରୀ ଶଙ୍ଖ ମହୁରୀର ନାଦ ।
ବଂଶାନୁ ଚରିତ ପୂର୍ବେ ଅଛଇ ବିଧାନ
ଅଧିବାସ ଦିନେ ଯାନ୍ତି ସମୁଦ୍ର ସ୍ନାହାନ ।
ଦାସୀ ପରିବାରୀ ମାନେ ଘେନି ହୀରାବତୀ
ପଙ୍କଜ ଅଷ୍ଟ ସଖୀଏ ସଙ୍ଗତେ ଅଛନ୍ତି ।
ନବୀନ ବୟସୀ ଦରହାସୀ ସେ ବୋଲାଇ
ହେମବର୍ଣ୍ଣ ଦେହ ଶୋଭା ତାର ଝଟକଇ ।
ଚାଲନ୍ତେ ପଥରେ ଶୋଭା ପାଉଛି ଧରଣୀ
ପଥ ଜଗି ବସିଅଛି ସେ ବୁଢ଼ୀ ମାଲୁଣୀ ।
ସ୍ତ୍ରୀ ବେଶେ ରଖାଇଛି ପରଦେଶୀ କୁମର
ହୃଦୟ ପଦ୍ମ ଫୁଟିତ ତାର ନିରନ୍ତର ।
ପ୍ରତିବେଶୀମାନେ ଦେଖି ପୂଜନ୍ତି ହକାର
ଅପାର କାଳରେ ମୋର ଆସିଛି ଝିଅଣ୍ଟି ।
ଏମନ୍ତ ବୋଧ ଦେଇଣ ତାହାଙ୍କୁ କହଇ
ଏହିବେଳେ ହୀରାବତୀ ମିଳିଲେକ ଯାଇ ।

ପଲ୍ୟଙ୍କରେ ବସିଅଛୁ ସ୍ୱଦେଶୀ ରତନ
ହୀରାବତୀ ବସେ ଯାଇ ବାମ ପାର୍ଶ୍ୱରେ ।
ଦାସୀ ସଖୀଗଣମାନେ ଦ୍ୱାରରେ ରହିଲେ
ସେ ଯାହାର ସୁଖ ଦୁଃଖ ମୁଖେ ପ୍ରକାଶିଲେ ।
ନାଗରୀ ବୋଇଲା ଶୁଣ ପ୍ରଭୁ ଗୁଣନିଧି
କାମାକ୍ଷୀ ଦେବୀ ତୁମ୍ଭଙ୍କୁ ହୋଇଲେ ପ୍ରସନ୍ନ ।
ତାହାଙ୍କୁ ସୁମର ତୁମ୍ଭେ ସ୍ୱଦେଶୀ କୁମର
ତାହାଙ୍କ ପ୍ରସାଦେ ତୁମ୍ଭେ ହେବ ନରେଶ୍ୱର
ନାରଦ ଗୋସାଇଁ ମୋତେ କହିଣ ଅଛନ୍ତି
ସ୍ୱପ୍ନେ ମାତା ଆସିଲେଟି ଗୃହ ମନୁ ଘାନ୍ତି ।
ବିଭାକାଳେ ବେଦୀରେ ମୁଁ ଗୁହିଁଥିବ ବସି
ସାକ୍ଷୀ କରିଥିବ ମୁଁ ଇନ୍ଦ୍ର ରବି ଶଶୀ ।
ଏହା କହି ହୀରାବତୀ ସ୍ନାହାନେ ଚଳିଲେ
କାମାକ୍ଷୀ ଦେବୀଙ୍କି ବସି କୁମର ସୁମରିଲେ ।
ବ୍ୟାସ ମହର୍ଷି କହିଲେ ଜୈମିନି ଆଗର
ଗଙ୍ଗାଧର ପାଣିକହେ ରଖ ଚକ୍ରଧର ।

ଇତି ଶ୍ରୀ ଭବିଷ୍ୟ ପୁରାଣେ ବ୍ୟାସ
ଜୈମିନି ସମ୍ବାଦେ ନାମ ଅଷ୍ଟାଦଶୋଽଧ୍ୟାୟ

—*—

## ଊନବିଂଶ ଅଧ୍ୟାୟ

### ସଦାନନ୍ଦ ନଗର ନୃପତିର କନ୍ୟା ହୀରାବତୀ ସହିତ ସିଂହଳଦ୍ୱୀପର ରାଜପୁତ୍ର ଜଗନ୍ନାଥର ବିବାହ

ଜୈମିନିରୁବାଚ

ଜଇମିନି କହନ୍ତି ସେ ବ୍ୟାସ ପାଦ ଧରି
ଏଥୁଅନ୍ତରେ ଚରିତ କହ ତପଶ୍ରୀ ।

ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
କାମାକ୍ଷୀଙ୍କୁ ଧ୍ୟାନକରେ ସ୍ୱଦେଶୀ କୁମର ।
ମାନ୍ତ୍ରିକର ମୋତେ ବାରେ ଶଇଳ ନନ୍ଦିନୀ
କଇଳାସ ବାସିଙ୍କର ତୁ ମନମୋହିନୀ ।
ନମସ୍ତେ ଅଭୟା ତୁ ଗୋ ଅଟୁ ମହାମାୟା
ଏ ଘୋରବିପଦ ନାଶ ଦେଇ ପଦଛାୟା ।
ପିତାମାତା ଛାଡ଼ି ସଦାନନ୍ଦ ଗ୍ରାମେ ଥାଇ
ଏଥୁ ମାନ୍ତ୍ରିକର ମୋତେ ତୁହି ମହାମାୟୀ ।
ହୀରାବତୀ କନ୍ୟାର ସେ ଅଧିବାସ ଆଜ
ପ୍ଲକ୍ଷଦ୍ୱୀପରୁ ଆସିବ ସାଧୁର ତନୁଜ ।
ସେହି ଆସିଣ ଲଭିବ କନ୍ୟା ଶିରୋମଣି
ଏଣୁ କର ମାନ ତୋତେ କରୁଛୁ ଦଣ୍ଡ ନମି ।
ସାଧୁପୁତ୍ର ସ୍ତୁତି ଶୁଣି କାମାକ୍ଷୀ ଆସନ
କମ୍ପିତ ହୋଇଲା କରି ଘୋର ଗରଜନ ।
ହୃଦେ ଜାଣି ଆଦ୍ୟମାତା ବାହାର ହୋଇଲେ
ସଦାନନ୍ଦ ଗ୍ରାମ ମାଡ଼ି ସଧିରେ ଚଳିଲେ ।
ରାତ୍ରି ଅର୍ଦ୍ଧରେ ମିଳିଲେ ମାଲୁଣୀ ଭୁବନ
ସାଧୁପୁତ୍ର ଯେଉଁଠାରେ କରିଛୁ ଶୟନ ।
ସାଧୁପୁତ୍ର ଜଗନ୍ନାଥ ନୟନେ ଦେଖିଲା
ତାଙ୍କ ବେନି ପାଦ ଧରି ବିନୟେ କହିଲା ।
କାମାକ୍ଷୀ ବୋଇଲେ ଶୁଣ ସାଧୁର କୁମର
କେହି ନ ଜାଣିବେ କନ୍ୟା ଦେବି ସ୍ୱହସ୍ତର
ଶାରଙ୍ଗ ଭୁବନେ କନ୍ୟା କରାଇବି ବିଭା
ସର୍ବ ଦେବଗଣ ତୁଲେ ଅଣାଇ ମଘବା ।
ରାତ୍ରି ଶେଷେ ପ୍ଲକ୍ଷଦ୍ୱୀପ ବୀରଭାନୁ ସୁତ
ବିବାହ ସମ୍ଭାର ଯେନ ମିଳିଲା ତ୍ୱରିତ ।
ବେଦୀପରେ ବସାଇଲେ ନେଇ କନ୍ୟାବର
ଯୁବତୀ ମିଳିଣ କଲେ ମଙ୍ଗଳ ଉଚ୍ଚାର ।
ଏହିବେଳେ ଆଦ୍ୟମାତା ମାୟା ଉଆଇଲେ
ମାୟା ବିମାନରେ ବସି ସାରଥି ହୋଇଲେ ।
ତହିଁ ଶୂନ୍ୟମାର୍ଗେ ରଥ ବହନେ ବାହିଲେ
ବେଦୀର ପାଖକୁ ଯାଇ ଅନ୍ତରେ ରହିଲେ ।
କନ୍ୟାକୁ ବସାଇ ମନ୍ତ୍ର ଉଚ୍ଚାରିବା ବେଳେ
କନ୍ୟା କର ଧରି ମାତା ତହୁଁ ଘେନିଗଲେ ।
ବିମାନେ ବସାଇ ହୀରାବତୀ ଜଗନ୍ନାଥ
ଶାରଙ୍ଗ ଭୁବନେ ବିଜେକଲେକ ତ୍ୱରିତ ।
ଯୋଗାନ୍ୱେଷୀ ଋଷିଙ୍କର ମଠେ ବିଜେକରି
ସଦାନନ୍ଦ ଭୁବନରେ ପଡ଼େ କନ୍ୟାହରି ।

କନ୍ୟା କେହୁ ଖୋଜିଗଲ କର ହେ ବିଗ୍ଭର
କେହୁ ବୋଲେ କନ୍ୟା ଖୋଜିଗଲା ଦେଖିବାର
ସନ୍ଧାନ କରିଣ କନ୍ୟା ନ ପାଇଲେ କେହି
ସଦାନନ୍ଦ ସାଧୁ ଚିନ୍ତି ବିଗ୍ଭର କରଇ ।
ବୁଧଜନମାନେ ଯେବେ ସଭା ଭିଆଇଲେ
ଏକାସନରେ ବସିଣ ସର୍ବେ ବିଗ୍ଭରିଲେ ।
କେହୁ ବୋଲେ ଷଟପଦା ବର ଉଚ୍ଚାରଣ
ଦେଶ ଦେଶ ଲେଖାଦେଇ ପେଶ ଦୂତଗଣ ।
ବରପୂର୍ବା କନ୍ୟା କିଏ ନେଲା ଚୋରିକରି
ପରସ୍ପର କଥା ଭାଷା ହୋନ୍ତି ଏହିପରି ।
ଏମନ୍ତ ସମୟେ ଆସି ମିଳିଲେ ନାରଦ
ଦେଖି ସଭାଜନମାନେ ପୂଜିତାଙ୍କ ପାଦ ।
ସୁବାସିତ ଜଳ ନେଇ ପାଦ ପଖାଳିଲେ
ଆସନେ ବସାଇ ସବୁ କଥା ଜଣାଇଲେ ।
ବିଭାବେଳେ ଆଜ କନ୍ୟା କିଏ ଖୋଜିଗଲା
ନେଲା ବେଳରେ ତାହାକୁ କେହି ନଦେଖିଲା
ଖୋଜି ୨ ତାଙ୍କ ଦେଖା କାହିଁ ନ ପାଇଲୁ
ଭାଗ୍ୟକ୍ରମେ ମିଳିବାରୁ ତୁମ୍ଭଙ୍କୁ ଦେଖିଲୁ ।
ଏଥିର କାରଣ ତୁମ୍ଭେ କହ ମୁନିବର
ତୁମ୍ଭ ମୁଖରୁ ଶୁଣିଲେ ଶାନ୍ତ ହେବ ସ୍ଥିର ।
ନାରଦ ବୋଇଲେ ଶୁଣ ସାଧୁ ସଦାନନ୍ଦ
ଜାଣିଥିଲେ କନ୍ୟା ଚୋର କରିଥାନ୍ତି ବନ୍ଦ ।
କେହୁ ଖୋଜିଗଲ ତାକୁ ନ ପାଇଲ ତଥ୍ୟ
ତୁମ୍ଭେକେହି ଦେଖିଛକି ଏମନ୍ତ ଚରିତ ।
ଜାଣଇ ଏ ବର କନ୍ୟା ନୁହଇ ଘଟନ
ଯୋଗ ମାୟା କରିଛନ୍ତି ଏଥିର ବିଧାନ ।
ଏହିକ୍ଷଣି ବର ଏଥୁଁ ବାହୁଡ଼ିଣ ଯାଉ
ଅନ୍ୟ ଏକ କନ୍ୟା ଦେଖି ବିଭା ସେହୁ ହେଉ ।
ଆମ୍ଭେ ଜାଣୁ ସେହି କନ୍ୟା ନୁହଇ ଏହାର
ଶାରଙ୍ଗ ନଗରେଛନ୍ତି ଯାଇ କନ୍ୟାବର ।
ଯୋଗାନେନ୍ଦ୍ର ଋଷିମଠେ ଅଛନ୍ତି ଯେ ଯାଇ
କାମାକ୍ଷୀ ପ୍ରସାଦେ ତାର ଦୁଷ୍କୃତ ଯେ ନାହିଁ
ଆସିବେ ସ୍ୱର୍ଗରୁ ସର୍ବେ ଇନ୍ଦ୍ରାଦି ଦେବତା
ଋଷିପତ୍ନୀ ଋଷି ହେବେ ଧର୍ମ୍ମ ମାତା ପିତା
ସିଂହଳ ଦ୍ୱୀପେ ନିବାସ ସାଧୁ ରାଧାକାନ୍ତ
ତାହାର କନିଷ୍ଠ ପୁତ୍ର ନାମ ଜଗନ୍ନାଥ ।
ଚମ୍ପାବତୀ କନ୍ୟାର ତୋ ଅଟେ ସେହିବର
ବିହି ଘଟସୂନ୍ୟ କର୍ମେ କରିଛି ତାହାର ।
ଦ୍ୱାଦଶ ବର୍ଷରେ ମୃତ୍ୟୁ ଅଟଇ ତାହାର
ଗୁଣ୍ଡିକର ଦେଶୁଁ ଆସିଅଛି ସେଉଁବର ।
ଚମ୍ପାବତୀ କନ୍ୟାକୁ ସେ ବିବାହ ହୋଇବ
ବିଭା ଅଷ୍ଟରାତ୍ରେ ତାକୁ ଭୁଜଙ୍ଗ ଦଂଶିବ ।
ଅମର ସଭାକୁ ଚମ୍ପାବତୀ ଖୋଜିଯିବ
ଅମର ଯୋବଣୀ ତାକୁ ଜୀବଦାନ ଦେବ ।
ଯେତେକ ଲେଖା ଅଛଇ ତାହାର କର୍ମରେ
କିଏ ଆନ କରିବ ତା ବ୍ରହ୍ମାଣ୍ଡ ମଧ୍ୟରେ ।
ଏହା କହିଣ ନାରଦ ଶୂନ୍ୟେ ଚଳିଗଲେ
ଯୋଗମାୟା ଅତିବୃଦ୍ଧ ବିପ୍ର ରୂପ ହେଲେ ।
ଯୋଗାନେନ୍ଦ୍ର ପାଶେ ବସି କରନ୍ତି ବିଗ୍ଭର
କେମନ୍ତେ ହୋଇବ ବିଭା ଏହି କନ୍ୟାବର ।
ଏଥିର ଚରିତ ମୋତେ କହ ତପୋଧନ
ତୁମ୍ଭ ମୁଖରୁ ଶୁଣିବ ବିବାହ ବିଧାନ ।
ଏମନ୍ତ ନାରଦ ମୁନି ମିଳିଲେକ ଯାଇ
ଯୋଗାନେନ୍ଦ୍ର ଯୋଗମାୟା ଆସନେ ବସାଇ
ବିବାହ ଚରିତ କହି ନାରଦଙ୍କ ପାଶ
ଶୁଣି ହରଷ ଲଭିଲେ ବ୍ରହ୍ମାଙ୍କର ଶିଷ୍ୟ ।
ବୋଇଲେ ଜଣାଅ ସର୍ବ ଦେବ ଋଷି ମାନ
ବ୍ରହ୍ମା ମୁନେ ସୁଧର୍ମା ସଭାରୁ ଋଷିଗଣ ।
ତହୁଁ ଆସିଣ ମିଳିଲେ ଗଙ୍ଗୋଦକ ମୁନି
ସର୍ବ ଶାସ୍ତ୍ର ବିଶାରଦ କର୍ମମାନ ଜାଣି ।
ତାହାଙ୍କ ଅଗ୍ରତେ ସର୍ବେ ସନ୍ଦେଶ କହିଲେ
ଶୁଣି ମୁନିବର ତହିଁ ଧ୍ୟାନ ଆରମ୍ଭିଲେ ।
ବ୍ରହ୍ମାଘୋଷ ସୁମରିଣ ତୁମ୍ବୁରୁ ବଜାଇ
ସୁଧର୍ମାସଭା ପୂରିଣ ମହା ଉଚ୍ଛୁଳଇ ।
ସେ ନାଦ ଜାହ୍ନବୀ କର୍ଣ୍ଣେ ବିଭାକୁ ବରଣ
ଯେ ଯାହାର ହୃଦଗତେ କଲେ ଅନୁମାନ ।
ଯୋଗାନେନ୍ଦ୍ର ଋଷି ମଠେ ଶାରଙ୍ଗ ନଗର
ଗଙ୍ଗୋଦକ ମୁନି ବାଉଅଛନ୍ତି ତୁମ୍ବୁର ।
ବରକନ୍ୟା ବେଦୀ ପରେ କରିବେ ପ୍ରଦାନ
ତେଣୁକରି ତୁମ୍ବୁର ସେ କରୁଛି ବାଦନ ।
ଏହାକହି ସର୍ବ ଦେବେ ବାହାର ହୋଇଲେ
ଶାରଙ୍ଗ ଭୁବନେ ଆସି ଉଚ୍ଚତ ମିଳିଲେ ।

ଆସନେ ପୃଥ୍ୱୀକୁ ଭେଟ ହୋଇ ବେଦବର
କହିଣ ବିବାହ ରୀତି ଆଣିଲେ ସଗର ।
ଶାରଙ୍ଗ ଭୁବନେ ଆସି ପ୍ରବେଶ ହୋଇଲେ
ଏକମେଳେ ଋଷିଗଣେ ନୟନେ ଦେଖିଲେ
ଯୋଗାନ୍ଦେଷୁ ଋଷି ଦେଖି ସର୍ବ ଦେବଗଣେ
ମାନ୍ୟ ଧର୍ମିକରି ତାଙ୍କୁ ବସାଇ ଆସନେ ।
ବେଦୀ ଚଉକତି ବେଢ଼ି ବସିଲେ ସକଳ
ଅପସରା ନୃତ୍ୟ ଗୀତେ ଗାବନ୍ତି ମଙ୍ଗଳ ।
ବେଦୀରେ ବିବାହ ବିଧି ଶ୍ରୀଫଳ ସହିତେ
ବେଦବନ୍ଧେ ବିଭାକଲେ କୁଟଗ୍ରନ୍ଥି ମନ୍ତ୍ରେ ।
ଲଜାହୋମ ସହିତରେ ପୂର୍ଣ୍ଣାହୁତି ଦେଲେ
ବିଭା ସାରି କନ୍ୟା ବର ମନ୍ଦିରେ ଚଳିଲେ ।
ବିଭାସାରି ବେଦବର ବସିଲେ ଆସନେ
ଶଚୀପତି ବସିଲେକ ତାଙ୍କ ସନ୍ନିଧାନେ ।

ଯୋଗାନ୍ଦେଷୁ ଉବାଚ

ଯୋଗାନ୍ଦେଷୁ ପୁଚ୍ଛାକଲେ ବ୍ରହ୍ମା ମୁଖ ଚାହିଁ
ଯେତେକ ବିଦ୍ୟାରେ ଗୁରୁ ଉପଦେଶ ଦେଇ ।
କେତେ ବିଦ୍ୟା ହୃଦପଦ୍ମୁ ହୁଅନ୍ତି ଜାତହୋଇ
ତାହାଁର ଚରିତ ମୋତେ କହିବା ବୁଝାଇ ।
ଏଥିର ଚରିତ ମୋତେ କହ ବେଦବର
ତବ ମୁଖରୁ ଶୁଣିଲେ ଚିତ୍ତ ହେବ ସ୍ଥିର ।

ବ୍ରହ୍ମୋବାଚ

ଯୋଗାନ୍ଦେଷୁ ମୁଖ ଚାହିଁ ସାବିତ୍ରୀଙ୍କ ପତି
କହିଲେ ଗୁରୁଙ୍କ ନ୍ୟାୟ ଦୃଢ଼କରି ମତି ।
ଗୁରୁ ନ ଥିବାରୁ ବିଦ୍ୟା ନ ଥାଇ ଜଗତେ
ଚଉଷଠି ଗୋଟି ବିଦ୍ୟା ଅଛଇ ଯୁକତେ ।
ବିବାହ ମଙ୍ଗଳକୃତ୍ୟ ସଂସାରରେ ସାର
ସପ୍ତବେଦୁଁ ଉତପନ୍ନ ବେଦର ଭଣ୍ଡାର ।
ମଧୁପାନ ପ୍ରଜାପତି ଘଟସୂତ୍ର ଯେନ
ଘଟନ କରାଏ ସେହୁ ବେନିକୁଳ ଜାଣି ।
ପିତା ବିଦ୍ୟା, ମାତା ଧନ, ବନ୍ଧୁ ମାନେକୁଳ
ଇତରେ ଇଛନ୍ତି ରୂପ ଭୋଜନେ କୁଶଳ ।

ଏ ସାର ବିଦ୍ୟାର ଗୁରୁ ହୃଦେ ବୃହସ୍ପତି
ଜନ୍ମବେଳେ କର୍ମେ ଏହା ଲେଖିଣ ଅଛନ୍ତି ।
ବିଦ୍ୟା ଗୁରୁପଣେ ସେହୁ କଲେ ବିଦ୍ୟାମୁଖ୍ୟ
ସିନ୍ଦୁର କଙ୍କଣ ଜାତ ପୁରାଣ ସମ୍ମତ ।
ଏ ବେନିଙ୍କ ଗୁରୁ କହି ପୁରାଣ ପୁରୁଷ
ଚନ୍ଦନ ଭୂଷଣ ଗୁରୁ ଅଟନ୍ତି ମହେଶ ।
ଷଷ୍ଠ କର୍ମ ଷଷ୍ଠ ଗୁରୁ ଅଟେ ପଞ୍ଚମନ
ସ୍ତ୍ରୀଗଣଙ୍କ ଚରିତ ସପ୍ତ ନାରୀଙ୍କ ବିଧାଣ ।
ଶଯ୍ୟା ହୋମ, ଲଜହୋମ ଗୁରୁସାର୍ବଭୌମ
ରତି ଗୁରୁ ପ୍ରକୃତହିଁ ଏକାଦଶ ଜ୍ଞାନ ।
ଚତୁର୍ଥୀ ବିଧାଣ ବିଭା ଚଉଷଠି ଗୁରୁ
ସ୍ୱରୂପେ ଅରୂପେ ଗୁରୁ ଜନ୍ମିଛି ଔକାରୁ ।
ଚୌଷଠି ପ୍ରବନ୍ଧେ ଗୁରୁ ବିକାଶ ପ୍ରମାଣ
ବ୍ୟାସ ମହର୍ଷି କହିଲେ ଜୈମିନି ଆଗେଣ ।
ହୃଦେ ହେତୁ କଲେ ଅର୍ଥ ଦୃଶ୍ୟରେ ଆସଇ
ଭବିଷ୍ୟ ପୁରାଣେ ଗଙ୍ଗାଧର ପାଣି କହି ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି
ସମ୍ବାଦେ ନାମ ଊନବିଂଶୋଽଧ୍ୟାୟ



## ବିଂଶ ଅଧ୍ୟାୟ

## ଛତିଶ ଜାତିର ଗୁରୁ ବିଷୟରେ ସ୍ଥୂଳ ଉପଦେଶ

ବ୍ୟାସଙ୍କ ପାଦ ଧରିଣ ଜୈମିନି କହନ୍ତି
ଏଥୁ ଅନ୍ତରେ ଚରିତ କହ ବ୍ୟାସ ପତି ।
ଶାରଙ୍ଗ ଭୁବନେ ସର୍ବ ଦେବଗଣ ଥିଲେ
କି କୃତ୍ୟକରି ସେମାନେ ସ୍ୱସ୍ଥାନେ ଚଳିଲେ ।
ଏଥିର ଚରିତ ମୋତେ କହ ବ୍ରହ୍ମଋଷି
ଶୁଣି ସନ୍ତୋଷ ଲଭିବ ହୃଦପଦ୍ମେ ଘୋଷି ।

## ବ୍ୟାସଦେବ ଉବାଚ

ବ୍ୟାସ ମହର୍ଷି ବୋଲନ୍ତି ଶୁଣ ମୁନିବର
ବ୍ରହ୍ମା ଯା କହିଲେ ସର୍ବ ଋଷିଙ୍କ ଆଗର ।
ଯୋଗାନନ୍ଦ ଋଷି ମଠେ ବରକନ୍ୟା ରହି
ପଲଙ୍କେ ରହସ୍ୟ କେଳି ନିତ୍ୟରେ ହୁଅଇ ।
ରାତ୍ରି ଶେଷରେ ଉଦୟ ହେଲେ ଦିନକର
ବହନେ ସାରିଲେ ନିତ୍ୟକର୍ମ ଯେ ଯାହାର ।
ସ୍ୱାମୀପାଦଧରି ହରିବଞ୍ଚ ଯେ କହଇ
ଚାଲଆମ୍ଭେ ନିଜରାଜ୍ୟ ଯିବା ବେଗ ହୋଇ ।
ହରିବଞ୍ଚ ବଚନରେ ବୋଲେସାଧୁ ପୁତ୍ର
କାମାକ୍ଷୀ ପ୍ରସାଦୁ ଦେଖିଲଇଁ ଋଷି ସୁତ ।
ସେମାନେ ଅଇଲେ ଆମ୍ଭେ କହିବା ତାହାଙ୍କୁ
ବିଦାକଲେ ଆମ୍ଭେମାନେ ଯିବା ସ୍ୱଦେଶକୁ
ଯୋଗାନନ୍ଦ ବ୍ରହ୍ମାପାଦେ ବୋଲନ୍ତି ବଚନ
ଛତିଶ ଜାତିରଭେଦ ଅଷ୍ଟାଦଶ ବର୍ଣ୍ଣ ।
କେ କାହାର ଗୁରୁହୋଇ ବିଦ୍ୟା ଶିଖାଇଲେ
ବାଣିଜ୍ୟ ରନ୍ଧନ ପାକବିଧି କୃଷି ଭୁଲେ ।
ସକଳ ବର୍ଣ୍ଣର ଗୁରୁ କହ ବେଦବର
ସର୍ବଦେବ ଋଷିବୃନ୍ଦମାନଙ୍କ ମଧ୍ୟର ।
ଯୋଗାନନ୍ଦ ଋଷି ଶୁଣି ଏଥିର ବିଧାନ
ବ୍ରାହ୍ମଣର ଗୁରୁଅଗ୍ନି ଅଗ୍ନି ଗୁରୁ ବ୍ରହ୍ମା ।
କ୍ଷତ୍ରିୟର ଗୁରୁ ଦେବୀ ଶସ୍ତ୍ର ଅଧିପତି
ବୈଶ୍ୟ ଗୁରୁ ନାରାୟଣ ବନସ୍ପତି ସଙ୍ଗ ।
ଶୂଦ୍ର ଗୁରୁ ସୀମସ୍ଥାନ ସାମଗାନ ବାଣୀ
ଏ ଚାରି ଜାତିର ଭେଦ ଛତିଶ ଯେ ଜାଣି ।
ବର୍ଣ୍ଣଶଙ୍କରର ଗୁରୁ ଅନନ୍ତ ଶଙ୍କର
ନବଲକ୍ଷ ଲକ୍ଷ୍ମୀଗୁରୁ ଦୟାନିଧି ଠାକୁର ।
ତପିଙ୍କର ଗୁରୁ ଶାନ୍ତ ମହୀର ଆଚାର
ନ୍ୟାୟ ଗୁରୁ ଚନ୍ଦ୍ର ସୂର୍ଯ୍ୟ ପଞ୍ଚାଦି ଈଶ୍ୱର ।
ପଣ୍ଡିତଙ୍କ ଗୁରୁ ବୁଧ ବିଚାର ଉଦ୍ଭବ
ପ୍ରେମ ଭକ୍ତ ଗୁରୁ ଜାଣ ଶ୍ରୀରାଧା ମାଧବ ।
ବ୍ୟସନେ ବସନ ଗୁରୁ ଅନ୍ତରାତ୍ମା ଜାଣି
କୃଷି ବନ୍ଦେ ଗୁରୁ ଯେ ଅନନ୍ତ ନାରାୟଣୀ ।
ବିଶ୍ୱାବସୁ ଦିନେ ଗଲେ ଚଳି ଦ୍ରୋଣ ଗିରି
ପର୍ବତର ଅନନ୍ତ ଯେ ତହିଁ ମୁଦ୍ର ପାରି ।
ରୁଦ୍ର ଗିରିର ଉପରେ ଅଷ୍ଟଋଷିଗିରି
ତାରପରେ ଦ୍ରୋଣଗିରି ଗନ୍ଧ ଗିରିଧର ।
ତାରପରେ ଧୂର୍ବାଦନ୍ତ ବୃନ୍ତ ଗଛ ଜନ୍ମ
ମୃତ ପ୍ରାଣିମାନେ ତହିଁ ପାନ୍ତି ଜୀବଦାନ ।
ଦେବ ଶାସ୍ତ୍ର ସୁରଗିରି ପ୍ରାଣଯେ ବୋଲଇ
ଅମର ଔଷଧିମାନ ରଖିଣ ଅଛଇ ।
ଭକତି ଉଦନ୍ତ କହି ରଣର ବିଭୂତି
ଅସୁରଙ୍କ ଶୁକ୍ର ଗୁରୁ ଦେବ ବୃହସ୍ପତି ।
ଜାଣନ୍ତି ମହିମା ସାଙ୍ଖ୍ୟକର୍ମ ବିଧିଯେତେ
ଭବିଷ୍ୟ ପୁରାଣେ ଲେଖି ଆଗତ ଜଗତେ
ମୃଦଙ୍ଗ ମର୍ଦ୍ଦଳ ପଟ ତାଳ ଯେ ମହୁରୀ
ବାଦ୍ୟରସ ଗୀତ ନାଦ ଭେରୀ ଘନଭୂରୀ ।
ଏମାନଙ୍କ ଗୁରୁ ଜାଣି ଦେବ ଚକ୍ର ପାଣି
ଯୋଗଅଙ୍ଗ ଜାତ ଏହୁ ମାୟା ଦୟାମଣି ।
ସପ୍ତସ୍ୱର ଗୁରୁ ଭେକ ମୟୂର ଡାହୁକ
ଗଲସି କୋକିଳ ବେନ ଝିଙ୍କଯେ ଧୈବତ
ଏମନ୍ତେ ଯେ ସପ୍ତସ୍ୱର ପଞ୍ଚମ ଯେ ଥାଇ ।
ଯାନ୍ତ୍ରୀକମାନଙ୍କ ଗୁରୁ ଶାରଦା ବୋଲଇ ।
ଗୁରୁ ଯେ ପରମ ବ୍ରହ୍ମ ସର୍ବ ବର୍ଣ୍ଣେ ସାର
ସାର୍ବଭୌମ ଭଟ୍ଟାଚାର୍ଯ୍ୟ କରିଛନ୍ତି ସାର ।
ଏତେକହି ବେଦବର ସଭାର ମଧ୍ୟରେ
ସର୍ବଦେବଋଷି ଗଲେ ଯେ ଯାହାମନ୍ଦିରେ ।
ତହୁଁ କାମାକ୍ଷୀ ବୋଇଲେ ଯୋଗାନନ୍ଦପାଶେ
ବରକନ୍ୟା ବିଦା ଦେବା ଯିବେ ନିଜଦେଶେ ।
ଜଗନ୍ନାଥ ହରିବଞ୍ଚ ପାଶକୁ ଯାଇଣ
ବୋଇଲେ ସହକାରୀପେ କର ହେ ଗମନ ।
ନିଜ ରାଜ୍ୟ ଯାଇ ପିତା ମାତାଙ୍କୁ ଦେଖିବ
ଆମ୍ଭର କାରଣ କହି କଥା ବୁଝାଇବ ।
ବିମାନେ ବସାଇ ତାଙ୍କୁ କହିଲେ ବଚନେ
ସାରଥି ବାହିଲେ ଯିବ ତୁମ୍ଭର ଭୁବନେ ।
ରାଧାକାନ୍ତ ସୁଦେବୀଙ୍କୁ ସମସ୍ତ କହିବ
ନିଜଧର୍ମ ପାଳି ଗୃହେ ଦିନ ଯେ ବଞ୍ଚିବ ।
ଆଉରି କଥାଏ ମୋର ମନଦେଇ ଶୁଣ
ମାୟାକୁ ଥୋଇବ ଦୂରେ କରିଣ ଯତନ ।
ହିଂସାକୁ ଅଗ୍ନିରେ ଜାଳି ଦହନ କରିବ
ମିଥ୍ୟାହୁଁ ପାତକ ନାହିଁ ପ୍ରାପ୍ତେ ବ୍ରହ୍ମବଧ ।

କୁଟିଳ ଭାଷାରେ ଜନେ ପ୍ରୀତି ନ କରିବ
ଆତ୍ମାରେ ସନ୍ତୋଷ ଲଭି ବ୍ରହ୍ମଙ୍କୁ ଚୋଷିବ ।
କ୍ଷୁଧାର୍ତ୍ତିଙ୍କୁ ଅନ୍ନଦାନ ତୃଷାର୍ତ୍ତିଙ୍କୁ ଜଳ
ଏ କଥା ପାଳନ କଲେ ଲଭି ପୁଣ୍ୟ ଫଳ ।
ଶିକ୍ଷାପାଇ ବର କନ୍ୟା ରଥମାନେ ବସିଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ରଥ ପ୍ରବେଶ ହୁଅନ୍ତେ ସିଂହଦ୍ୱାର ଠାରେ
ସାଧବ ଯୁବତୀମାନେ ଅତି ପ୍ରେମାଦରେ ।
ବରକନ୍ୟା ବନ୍ଦାପନା କଲେ ବେଗେ ଯାଇ
ଅର୍ଘ୍ୟଥାଳୀ ଘେନିକରି ହୁଳହୁଳି ଦେଇ ।
ପୁତ୍ର ବଧୂ ପାଇଣ ସେ ପରମ ଆନନ୍ଦ
ଦିବ୍ୟଚକ୍ଷୁ ପ୍ରାପ୍ତ ହୁଏ ଯେସନେ କି ଅନ୍ଧ ।
ପୁତ୍ରବଧୂ ଆନନ୍ଦରେ ଗୃହରେ ରହିଲେ
ବ୍ୟାସଦେବ ଜୈମିନିଙ୍କ ଅଗ୍ରତେ କହିଲେ ।
ଭବିଷ୍ୟପୁରାଣ ବଂଶ ଅଧ୍ୟାରେ ସମାପ୍ତ
ଗଙ୍ଗାଧର ପାଣି ହରି ଚରଣ ଆଶ୍ରିତ ।

ଇତି ଶ୍ରୀ ଭବିଷ୍ୟପୁରାଣେ ବ୍ୟାସ ଜୈମିନି ସମ୍ବାଦେ ନାମ ବଂଶୋଽଧ୍ୟାୟଃ

ସମାପ୍ତ



ମୁଦ୍ରାକର—ଶଶୀ ବେହେରା, ଶଶିକଳା ପ୍ରିଣ୍ଟିଂ ପ୍ରେସ, ଅଲିଶା ବଜାର, କଟକ-୨

## ଏକେ ଏକେ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ପ୍ରକାଶ ପାଉଛି

| | | |
|---|---|---|
| * ସର୍ବାର୍ଥ ପ୍ରକାଶ ସିଦ୍ଧାନ୍ତ ଦର୍ପଣ ସେଟ | ଃ | ୭୫-୦୦ |
| * ଅଷ୍ଟ ସଂହିତା ସେଟ୍ | ଃ | ୧୦୦-୦୦ |
| ଅଧ୍ୟାପକ ଗୌରକୁମାର ବ୍ରହ୍ମାଙ୍କ ଭୂମିକାସହ | | |
| * ଉପେନ୍ଦ୍ର ଭଞ୍ଜ ଗ୍ରନ୍ଥାବଳୀ ସେଟ | ଃ | ୧୨୫-୦୦ |
| * ଭୀମଭୋଇ ଗ୍ରନ୍ଥାବଳୀ | ଃ | ୨୫-୦୦ |
| * ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ | ଃ | ୧୪-୫୦ |
| * ବେଣୁଧର ପଦ୍ୟାବଳୀ | ଃ | ୧୫-୦୦ |
| * ମନୁ ସଂହିତା | ଃ | ୧୫-୦୦ |
| * ପଞ୍ଜିକା ସର୍ବସ୍ୱ ( ଆଠମଲ୍ଲିକ ରାଜାଙ୍କ କୃତ ) | ଃ | ୧୮-୦୦ |
| * ଗଦାଧର ପଦ୍ଧତି | ଃ | ୧୨-୦୦ |
| * ପୁରୋହିତ କର୍ମକାଣ୍ଡ (୩ଖଣ୍ଡ ସେଟ) | ଃ | ୫୨-୦୦ |
| * ବହ୍ବାରିଲ୍ଲ ଗୀତା | ଃ | ୩୦-୦୦ |
| * ବହ୍ବାଭୀ କର୍ମକାଣ୍ଡ | ଃ | ୧୪-୫୦ |
| * ଶ୍ରୀ ଚୈତନ୍ୟ ଭାଗବତ | ଃ | ୧୫-୦୦ |
| ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ କୃତ | | |
| * ଯୁଗଳ ରସାମୃତ ଲହରୀ | ଃ | ୨-୫୦ |
| * ଓଡ଼ିଶାର ରଙ୍ଗମଞ୍ଚ ଇତିହାସ | ଃ | ୧୫-୦୦ |
| ଅଧ୍ୟାପକ ରମେଶ ସାମନ୍ତରାୟଙ୍କ | | |
| * ଓଡ଼ିଆ ସାହିତ୍ୟରେ ଭୀମଭୋଇ | ଃ | ୪-୦୦ |
| * MAHIMA DHARMA (By N. Senapati) | Rs. | 4-00 |

---